# ଜଗନ୍ନାଥ ଜଗଦ୍ଦେବ ସଂଚୟନ

ପ୍ରକାଶିକା
ରାଣୀ କବିତା କୁମାରୀ ଦେବୀ
ଟିକଲୀ, ଆଂଧ୍ର

ମୁଦ୍ରାକର
ରେଡ଼ିଏଣ୍ଟ ପ୍ରୋସେସ୍
ବ୍ରହ୍ମପୁର

ପ୍ରଚ୍ଛଦ ଅଂକନ
ଶିଳ୍ପୀ ସୀତାକାଂତ ମହାପାତ୍ର

ମୂଲ୍ୟ—୨୫ ଟଙ୍କା

**JAGANNATH JAGADDEB SANCHAYANA**

**By· Rajah Jagannath Deo Verma**
**Tekkali**

*Published by*
**Rani Kabita Kumari Devi**

*Printed by*
**Radiant Process, Berhampur**

*Cover Design*
**Shri Sitakanta Mahapatro**

**Price— Rs. 25/-**

—ଉତ୍ସର୍ଗ—

ଓଡ଼ିଶାର ମୁଖ୍ୟମଂତ୍ରୀ

**ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ**

ମହୋଦୟଙ୍କ

କର – କମଳେଷୁ

# ଅଗ୍ରୀକଂନ

ଅତ୍ରତତ୍ର ବର୍ଷିପ୍ତ ହୋଇ ପଡ଼ିଥିବା ପ୍ରାଚୀନ ଓ ଆଧୁନିକ କବିତା ଗୁଡ଼ିକ ଏକତ୍ର ହୋଇ "ଜଗନ୍ନାଥ ଜଗଦ୍ଦେବ ସଂଚୟନ" ପ୍ରକାଶିତ ହେଲା ।

ଏଠାରେ ପ୍ରଶ୍ନ ଉଠିପାରେ ତମ ନା' ତ ଜଗନ୍ନାଥ ଦେବବର୍ମା 'ଜଗଦ୍ଦେବ' ପଦ କିପରି ସଂଯୁକ୍ତ ହେଲା ? ଏହାର ଉତ୍ତର ଏହିକି ଐତିହାସିକ କଳାପାହାଡ଼ ଯେଉଁ ସମୟରେ ପୁରୀ ଆକ୍ରମଣ କଲା ଓ ଶ୍ରୀମୂର୍ତ୍ତୀଙ୍କୁ ଧ୍ୱଂସ କରିବାକୁ ଲାଗିଲା, ସେହି ସମୟରେ ଅଠଗଡ଼ (ଅଷ୍ଟଦୁର୍ଗ)ର ରାଜା ଜଗବନ୍ଧୁ, ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କୁ ଆଣି ମାରଦା ଶୀର୍ଷକ ଦେଉଳ ନିର୍ମାଣ କରି ତହିଁରେ ଶ୍ରୀମୂର୍ତ୍ତି ଥାପି, ଏକବର୍ଷ କାଳ ଯଥାବିଧି ମଣ୍ଡି କାଂଡ ଚୁଳାଇ ଥିଲେ । ତହୁଁ ଏହି ଶ୍ରୀମୂର୍ତ୍ତିଙ୍କୁ ରାଜା ଜଗବନ୍ଧୁ ତାଂକର ସ୍ୱମୀଠ ପୁରୀ ଦେବାଳୟକୁ ଫେରସ୍ତ ଦେଇଥିଲେ । ବିପଦ କାଳେ ରାଜା ଜଗବନ୍ଧୁ ଯେଉଁ ସହାୟ କରିଥିଲେ, ସେଥିର ପ୍ରତିଦାନ ସ୍ୱରୂପ ପୁରୀ ଗଜପତି ମହାରାଜା 'ଶରଣ ପଞ୍ଜର ମାନ ଉଦ୍ଧାରଣ ଭାଇ ଜଗଦ୍ଦେବ' ଉପାଧି ଭୂଷଣ କରିଥିଲେ । ଏହି ବିରୁଦ ବ୍ୟକ୍ତିଗତ ନୁହେଁ—ପାରମ୍ପାରିକ । ତେଣୁ ମୁଁ ଏହି କବିତା ସଂଚୟ ଆଖ୍ୟା 'ଜଗନ୍ନାଥ ଜଗଦ୍ଦେବ ସଂଚୟନ' ରଖିଲି ।

ସଂଚୟନ ସମୀକ୍ଷା କରିବାକୁ ମୁଁ ସମର୍ଥ ନୁହେଁ, କରିବେ ବିଜ୍ଞ ଶ୍ରଦ୍ଧାବାନ ପାଠକ ମଣ୍ଡଳ । ପଚାଶ ବର୍ଷରୁ ଅଧିକ ସାଧନା ସତ୍ତ୍ୱେ, ଲେଖକର ଗୋଟିଏ ହେଲେ କବିତା ଏ ପର୍ଯ୍ୟନ୍ତ ପାଠ୍ୟ ପୁସ୍ତକ ସଂଶ୍ଳିଷ୍ଟ ହୋଇ ନାହିଁ । ବୋଧହୁଏ ଏହା ଲେଖକଂକର ମୃତ୍ୟୁ ପରେ ସଂଭବ ହେବ ।

ଏହି ପ୍ରକାଶ ଲାଗି ଯେଉଁ ସାହିତ୍ୟିକ ବର୍ଗ ମୋତେ ପ୍ରେରଣା ଦେଇଛନ୍ତି ସେମାନଂକ ମଧ୍ୟରେ ଶ୍ରୀଯୁକ୍ତ କପିଳେଶ୍ୱର ଦାସ, ଅଧ୍ୟାପକ କ୍ଷେତ୍ରବାସୀ ନାୟକ, ମୋର ସହଧର୍ମିଣୀ ଶ୍ରୀମତୀ କବିତା କୁମାରୀ ପ୍ରମୁଖଂକୁ ମୁଁ ବିଶେଷ ଭାବରେ କୃତଜ୍ଞତା ଜଣାଉଛି ।

ରଚକ

# ସୂଚୀ

| ନାମ | ପୃଷ୍ଠା |
|---|---|
| ୨୨ ) ପଶ୍ଚିମ ପଥେ | ୫୩ |
| ୨୩ ) ପଥ ଆଜ ରୋଧନା | ୫୫ |
| ୨୪ ) ସୃଜନ ରହସ୍ୟ | ୫୮ |
| ୨୫ ) ବସନ୍ତ-ବରଣ | ୬୦ |
| ୨୬ ) ଶେଷ ଭିକ୍ଷା | ୬୩ |
| ୨୭ ) କଂପନ | ୬୫ |
| ୨୮ ) ବିଦାୟ ବିଳାପ | ୬୭ |
| ୨୯ ) ଆହ୍ୱାନ | ୭୩ |
| ୩୦ ) ଅବିସ୍ମରଣୀୟ | ୭୫ |
| ୩୧ ) ମିଳନ ବ୍ୟବଧି | ୭୯ |
| ୩୨ ) ମିଳନ ଭିକ୍ଷା | ୮୨ |
| **ସତୀ ପାର୍ବତୀ** | ୮୬ |
| **ରକ୍ତଗୁଚ୍ଛ** | ୧୦୫ |
| **ପ୍ରିୟା—ପ୍ରବାସ** | |
| ୧ ) ପ୍ରିୟା-ପ୍ରବାସ | ୧୪୭ |
| ୨ ) ଜ୍ୟୋତ୍ସ୍ନା-ପ୍ରଦୀପ | ୧୫୨ |
| ୩ ) ବସଂତ ତମେ ଆସିବ | ୧୫୫ |
| ୪ ) ରିପଭ୍ୟାନ୍କଲ୍ | ୧୫୮ |
| ୫ ) କାର୍ତ୍ତିକ | ୧୬୩ |
| ୬ ) ସଂଧ୍ୟାଙ୍ଗ | ୧୬୭ |
| ୭ ) ଶରୀର ଓ ଶୋଣିତ | ୧୬୮ |
| ୮ ) ଶୁଭ୍ରାନୀହାର ସମର ବିଦାୟ | ୧୭୦ |
| ୯ ) ଦ୍ୱୈତ ସଂଗୀତ | ୧୭୭ |
| ୧୦ ) ଅଜ୍ଞାତର ଆଗନ୍ତୁକା | ୧୭୮ |

| ନାମ | ପୃଷ୍ଠା |
| --- | --- |
| ୧୧ ) ଅମାବାସ୍ୟାର ଘାସ | ୧୮୨ |
| ୧୨ ) ନାଗାବଳୀରେ ବନ୍ୟା | ୧୮୫ |
| ୧୩ ) ଉପେକ୍ଷିତା | ୧୯୨ |
| ୧୪ ) ଏକବୃନ୍ତ ତିନିକଳି | ୧୯୪ |
| ୧୫ ) ଦଗ୍‌ଧ କୋରକ | ୨୦୦ |
| ୧୬ ) ପ୍ରଣମାମି କାଳିଦାସ | ୨୦୨ |
| ୧୭ ) ଛିନ୍ନ ବୃନ୍ତ | ୨୦୯ |
| ୧୮ ) ସ୍ମୃତି ଓ ସଂସ୍କୃତି | ୨୧୧ |
| ୧୯ ) ଶଂକରାଭରଣ ଚଳଚିତ୍ର ସନ୍ଦର୍ଭରେ | ୨୧୫ |
| ୨୦ ) ଲୋଡ଼ାନାହିଁ ଆଉ ଶୋଣିତର ସ୍ୱାହା | ୨୧୮ |
| ୨୧ ) ଓକିଲଂକ ଉକ୍ତି | ୨୨୦ |
| ୨୨ ) କେଉଁଠି ଅଛହେ | ୨୨୩ |
| **ଭ୍ରମ ସଂଶୋଧନ** | **୨୨୫** |

## ପ୍ରଥମ କବିତା

ଯେଉଁ ଜନ ଅଛୁ ଧନ ଅଭାବେ,
ଦୁଃଖ କଷ୍ଟ ଭୋଗେ ଧରଣୀ ଠାବେ ।
ପୁରେନା ଉଦର ତାହାର ଅହା,
ଶୁଣ କ୍ଷୁବ୍ଧ ଡାକ ହେ ଚଉବାହା ।

୧୯୪୦

## ତମସୋ ମା ଜ୍ୟୋତିର୍ଗମୟ

ରାଗ — ଶଙ୍କରାଭରଣ

ଓଁ ପ୍ରଳୟ ପୟୋଧି ଜଳେ,
ଘନଅନ୍ଧାର ଚରାଚର ଭୁବନତଳେ;
ତଟ ସୁନ୍ଦର ବଟ ପଲ୍ଲବ ସବୁଜ ଦଳେ;
ବାଳ ଗିରିଧାରୀ ଅଙ୍ଗୁଳି ଓଠେଧରି କ୍ରୀଡ଼ନକ କୌତୁହଳେ;
ପ୍ରାଚୀ ଗଗନରେ ଶୁଭ୍ର ଉଷସୀରେ ସୂର୍ଯ୍ୟ-ପ୍ରଦୀପ ଜଳେ;
ଧୀର ସମୀରଣେ ଜ୍ୟୋତି ଝଙ୍କାରଣେ ନାଦଶୁଭେ ଧରଣୀତଳେ,
ପ୍ରଦୀପ୍ତ ଉଜ୍ଜ୍ୱଳେ ବିହଂଗ କଳକଳେ ଜାଗ୍ରତ ସ୍ପନ୍ଦନ ଚଳେ;
ସାଗର ଉଲ୍ଲୋଳେ ଊର୍ମି କଳକଳେ ତବ ଶ୍ଲାଘ୍ୟ ଗାୟନ ଗଳେ
ସୁମଧୁର ସଂଗୀତ ବଲ୍ଲକୀ ଗୁଂଜିତ ଅଂଗୁଳି ଚଳେ ଚଞ୍ଚଳେ;
ଦୀନ ଜଗନ୍ନାଥ ବନ୍ଦେ ଚରଣଯୁଗ ଢଳଢଳ ଅଶ୍ରୁ ଜଳେ ।

## ପରିଚୟ

ଯୌବନ ବନ୍ଧୁ !  ଅଙ୍ଗନେ ମମ
ରଙ୍ଗିନେ ହେଲ ଉଭା-
ସରମେ ସରମେ  ନଇଁ ଆସିଥିଲ
ପୁଷ୍ପିତ ତବ ଗନ୍ଧ;
ମଉନେ ମଉନେ ବଧୂଳି ଥଇଲ,
ମରମେ ମରମେ ମୁକୁଳ ଫୁଟିଲ
ନମ୍ର ଗୃହାଁଣୀ  କହିଲା ଯେ ବାଣୀ
'ମଉନ-ପ୍ରଣୟ-ପ୍ରଭା'-
ଯୌବନ ବନ୍ଧୁ !  ଅଙ୍ଗନେ ମମ
ରଙ୍ଗିନେ ହେଲ ଉଭା ।

ସେଦିନର ସେଇ          ମଧୁ-ଲଗନରେ
ମଳୟ ବହିଲା ଯେବେ-
ଏ ମୋର ସୁହାଁଣୀ          ସ୍ୱର୍ଣ୍ଣ ଢ଼ାକିଲା
ଉଜ୍ଜ୍ୱତର ନୀଳ-ନଭେ;
ବିପିନ ବକ୍ଷ କଲା ସମାକୁଳ,
କୋକିଳ ଗାଇଲା 'ବଉଳ ବଉଳ',
ଅମୃତ ଝର          ଦ୍ରବିଲା ମୃଦୁଳ-
ପଲ୍ଲବେ     ପଲ୍ଲବେ —
ସେଦିନର ସେଇ          ମଧୁ ଲଗନରେ
ମଳୟ ବହିଲା ଯେବେ ।

ବନ୍ଧୁ ଗୋ ମୋର          ନୟନେ ନୟନେ
ଅଞ୍ଜନ ଦେଲ ବୋଲି,
କୁସୁମ ଲପନେ          ଚୁମ୍ବନ ରଚି
ନାଚିଲା ଏ ମୋର ଅଳି;
ସସୀମ ଚିତ୍ତ ସହସା ଅସୀମ,
ଫଗୁଣ ମତ୍ତ ପରିମଳ ସମ,
ତନୁର ଲଳିତ          ଭୁବନେ ଭୁବନେ
ଝଲସିଲା ନବ ଝଳ —
ବନ୍ଧୁ ଗୋ ମୋର          ନୟନେ ନୟନେ
ଅଞ୍ଜନ ଦେଲ ବୋଲି ।

ବଲ୍ଲକୀ ତାରେ ନିତ୍ୟ-ନୂତନ-
ମୂର୍ଚ୍ଛନା ଗଲା ଛୁଟି,
କଣ୍ଠେ ଝୁଲିଲା ଶୀରଛ-ମୁକ୍ତା–
ବକୁଳ ପାଖୁଡ଼ା ଫୁଟି;

ଶୁଭ୍ର ଝରଣା-ମୁକୁରେ ନଳିନ
ପ୍ରସାଧନ ରଚେ ପ୍ରଣୟ ସାଧନ-

ପଥେ ପଥେ ଆଜି ପ୍ରଦୀପ ମାଳିକା-
ଶରତର ପରିପାଟୀ-

କାହାର ଏ ମଧୁ ପରିଚୟେ ମୋର
ବନ୍ଧନ ଗଲା ଛୁଟି !

---

# ଅନୁବନ୍ଧ

ପୂର୍ବ ଗଗନେ ଉଦିଲା ସ୍ୱର୍ଣ୍ଣରଥ
ଚିର ସୁନ୍ଦର ଅମୃତ ମମ ପଥ;
ପ୍ରଭାତ ସିକ୍ତ ମଳୟ ପରଶେ
କୁସୁମ ନାଚଇ ହରଷେ ହରଷେ,
ଆସିଚି ମଧୁର କାଳ
ବାନ୍ଧଗୋ ସଖି ! ଏ ମମ କଣ୍ଠେ ବାନ୍ଧଗୋ ତବ ମାଳ ।

ଅଗୁଆ ଗୀତଟି ଗାଅ ଗୋ ଆଜ ମନେ
ଅନ୍ତରେ ଯାହା ସାଇତିଛ ପରଛନ୍ନେ ;
କୁମାରୀ ବୟସେ ଯେତେ କଳପନା
ସେସବୁ ଯେ ଆମ ମଧୁ ବିଭାବନା;
ଖୋଲିଦିଅ ପ୍ରୀତିବାଧ
ସଜନି ଗୋ ତହିଁ ମାଡ଼ି ବିରଚିବ ଆମରି ନୂତନ ରାସ ।

ତଟିନୀ ଜୀବନ ଢ଼ାଳଇ ସିନ୍ଧୁ ପାଦେ-
'ମଳୟ ମାରୁତ' ଅଳି ଝଂକୃତ ନାଦେ;
ଦଶଦିଶି ଦିଶେ ରୁଚିର ଶ୍ୟାମଳ-
ଜୀବନ ରଚଇ ଜୀବନ ବିମଳ-
ପିକ ଗାଏ ଗଳା ମେଳି-
ପୀରତିକୁମାରୀ ମୁଗଧେ ଚୁମ୍ବଁଇ କଅଁଳ ପାଖୁଡ଼ା ଟେକି ।

ଗଗନ ଚରଣେ ନିତ୍ୟ-ନୂତନ ଛନ୍ଦେ
ଫଲ୍‌ଗୁ-କୁସୁମେ ଶାନ୍ତ ସଲିଳ ବନ୍ଦେ;
ସାଗରେ ଭସାଇ ସୁନା ତରଣୀଟି
ନାଉରୀ ଗାଅଇ ଆମ ରାଗିଣୀଟି;
ବିହଗ ଖେଳଇ ନଭେ
ନଭ-ଦରପଣେ ଯୁଗଳ ବଦନ କେଉଁ ସୁଖ ଅନୁଭବେ ?

ଚଉଦିଗେ ଆମ ସୁନ୍ଦର ମନଲୋଭା
ଘନ ଆନନ୍ଦେ ଉଦ୍‌ବେଗି ଯିବା ଶୋଭା;
ଅଧରେ ଈଷିତ ବ୍ରୀଡ଼ା-ଅରୁଣିମା
ଏତନୁ— ମନର ସ୍ୱର୍ଣ୍ଣ ସୁଷମା
ଦେଖି ହସେ ମଧୂଉଷା-
ଆସଲୋ ସଜନ ! ସଜାଇଦିଏ ମୁଁ କଣ୍ଠେ କନକ ଭୂଷା ।

ଏକଇ ବନର ପକ୍ଷୀ ଗୋ ଆମେ ବେନି
ଦୂରେ ଦୂରେ ଥିଲୁ ପୂର୍ବ କରମ ଘେନି;
ବହୁବାର ଦେଖା ଧରଣୀ-ବଳୟେ-
ଘେନ ପାରନାହୁଁ ତଥାପି ହୃଦୟେ;
ଅଭିଶାପ ଗଲା ତୁଟି-
ଏକଇ ବୃନ୍ତେ କୁସୁମ ଜନମେ ଆସିଲୁଗୋ ତେଣୁ ଫୁଟି ।

ଆସ ଆସ ସଖି ଜୀବନର ପ୍ରିୟତମା !
ଅଭିମାନ ତୋରେ ମାନୁଛିଗୋ ନବରମା;
ବସୁମତି ଆଜି ଡ଼ାକେ ଚଯ୍ନହାକୁଳେ-
ଅମ୍ବର ଖେଳୁଛି ଢେଉ ଚୂଳେ ଚୂଳେ;
ପ୍ରୀତି ହେଉ ପରିମଳ-
ବକ୍ଷେ ଗୋଠାଇ ନଅ ଗୋ ମିଳନ-ଅଶ୍ରୁ-ମୁକୁତା-ଫଳ ।



୬

# ଅସୀମ ବନ୍ଦନା

ସତ୍ୟ ଶିବ ସୁନ୍ଦର ହେ ତାଳ ଶିରେ
ପୁଣ୍ୟ ସୁଧା ଧାର,
ଗାଇଯିବ ମୁକ୍ତ କଣ୍ଠେ ଅସୀମର
ସଂଗୀତ ଉସାର ।

ତୁଟିଯିବ ଫିଟିଯିବ ଏ ଶୃଙ୍ଖଳ,
ଜୀବନର କାର –
ସତ୍ୟ ଶିବ ସୁନ୍ଦର ହେ ତାଳ ଶିରେ
ପୁଣ୍ୟ ସୁଧା ଧାର ।

ସୃଷ୍ଟିର ଅଜ୍ଞାତ କୋଣେ ବହୁଦୂରେ–
ଶୁଭଦ ଲଗନେ
ବାଜି ଉଠେ ଆହ୍ୱାନର ବଂଶୀବୀଣା
ଅସ୍ପଷ୍ଟ ସ୍ପନ୍ଦନେ ।

ବାତ ସମ ନିର୍ବିକାର, ଅଦୃଶ୍ୟ ସେ
ତର ଶ୍ରୁତି-ଗ୍ରାହ୍ୟ,
ଦୁଗ୍ଧ ସମ ଥିର ଉଠେ, ଅଚଳ ସେ-
ସଦ୍ୟ ଅନୁଭବ୍ୟ ।
ସ୍ଫୁରିଯାଏ ସେ ମୂର୍ଚ୍ଛନା, ଲଚ୍ଛାପୂରିତ
ଲୀଳା ମନୋହର;
ଢେଉ ଚୂଳେ ଦ୍ରବ ଆସେ ସେହି ଧାରା
ସଙ୍କ୍ରା ଅନୁସ୍ୱର ।
ଜ୍ୟୋତ୍ସ୍ନାଙ୍କିତ ମଧୁଶଯ୍ୟା ଆସ୍ତରଣ
ରତନ ଉପରେ,
ରଚି ଆସେ କାନ୍ତ କ୍ରୀଡା ନିରବଧି
ସ୍ୱର୍ଣ୍ଣ ଅଭିସାରେ ।
ସେଇ ବନ୍ଧୁ ତଳେ ଭାସିଯାଉ ଏଇ
ଯନ୍ତ୍ରବନ-ଭେଳା
ସତ୍ୟ ଶିବ ସୁନ୍ଦର ହେ ତାଳ ଶିରେ
ପୂଣ୍ୟ ସୁଧା ଧାରା ।
ସତ୍ୟ ଶିବ ସୁନ୍ଦର ହେ ଦେଖ ଆଜ
ଧରଣୀ କପଟ-
ସ୍ୱପ୍ନ ପୁରେ ଭ୍ରମାଉଛି ଦେଇ ଖୋବେ
ମୃଣ୍ମୟ ଶକଟ ।
ସକଳ ପାପ ସଞ୍ଚିବା ପାଇଁ ତାକେ
ମେଲଇ କପାଟ-
ଶୁଣ ଶୁଣ ନିର୍ମୂର୍ତ୍ତି ହେ ବୁଭୁକ୍ଷୁର
ବିକଳ କୁହାଟ ।
ଶ୍ମଶାନରେ ଲେଟିଯାଏ ପୂତିଗନ୍ଧ
ଶବ ମାଳ ମାଳ-
ଖାଉଥି ଏ ରଙ୍ଗମଞ୍ଚ - ଅଭିନୟ
ହେବ କେତେ କାଳ ?

ମହାକାଳ-ସ୍ରୋତ ଆଜ ଖାଇଯାଏ
ଧସ୍ର ତାଡ଼ି ତାଡ଼ି,
କେତେ ମାନ, ଯଶ, ଧନ ଅକାତରେ
ବେକ ମୋଡ଼ି ମୋଡ଼ି ।
ଏଥ ଘାଟେ ହାହାକାର; କେ ଭୋଗୁଛି
ରୁଦ୍ର ନର୍ଯାତନା-
କାର ସୁଧା ପାତେ ପଡ଼େ ହଳାହଳ
ବଚଣ୍ଡ ସର୍ଜନା ।
ଜଳୁଅଛି ହୋମାନଳ ଦ୍ରାଣୀଯାଏ
ଝାଣିହୋଇ ଆପେ —
ନୁହଇ ସେ ସାଧନାର ଯଜ୍ଞକୁଣ୍ଡ,
ରୌରବର ଯୂପେ ।
କେଉଡାନାହିଁ ଷଡୀକର ଉଦ୍ଧୀପନା
ଏ ରୁଦ୍ଧ ଜୀବନେ,
କେଉଡାନାହିଁ ଜଡ଼ତା ହେ ସୀମାହୀନ
ଯୁଗର ଅୟନେ ।
ବାହିନିଅ ଦୂରେ ଦୂରେ ବହୁଦୂରେ
ଏ ମୋର ତରଣୀ,
ଶାନ୍ତ ନଭ ତଳେ ଦେଖାଇ ଦିଅ ହେ
ଅମୃତ ସରଣୀ ।
ଫିଙ୍ଗି ଦୂରେ ପାପ, ଗ୍ଲାନି, ଅବସାଦ;
ଦୈନ୍ୟ, ବ୍ୟଥାଭାର —
ବାହିନିଅ ଏ ତରଣୀ ଅସୀମକୁ
ଆହେ କର୍ଣ୍ଣଧାର !
ଭୁଞ୍ଜ ତୃଣ-ବେଣୁ ରନ୍ଧ୍ରେ ଦିଅ ଫୁଙ୍କି —
ସୁଲଳିତ ତାନ,
ସୃଜନର ଅଭିସାରେ ଉଠୁ ତହିଁ
ଶ୍ରୁତି ରସାୟନ ।

ପିଣ୍ଡରେ ମର୍ମର ଉଠୁ ନାଦବନ୍ଦୁ
ମଧୁର ନିକ୍ୱଣେ,
ଉର୍ମିପରେ ଉର୍ମିମାଳା ବିକ୍ଷୋଭିତ
ଉଦ୍ଧତ-କମ୍ପନେ ।
ତବ କର ସ୍ପର୍ଶେ ଯାଉଥିବ ତରଳ
କର୍କଶ ପାଷାଣ,
ଘାସ ଗୁଳ୍ମ ଗାସେ ଗାଉ ଆଗମନୀ
ଗୀତ ସମ୍ବୋଧନ ।
ହେ ମିଳନ ! ବକ୍ଷେ ମୋର ଉକୁଟାଇ
କମଳ ଚରଣ,
ଯୁଗ ମଧ୍ୟେ ବିରାଟର ଭୋଗ-ରଶ୍ମି
କର ବିକୀରଣ ।
ହେ ନିତ୍ୟ ଯୌବନ-ଯୁଗ୍ମ ! ଘେନ ଆଜ
ପଦାବ୍ଜେ ପ୍ରଣାମ —
ଆତ୍ମା ମୋର ପୂର୍ଣ୍ଣ ହେଉ, ଧନ୍ୟହେଉ,
ହେଉ ଅନୁପମ ।

---

# ଇଙ୍ଗିତ

ଆହା ଏ କୁସୁମମଧୁ ବିଳସିତ ପ୍ରହରେ
କେ ଆସଇ ଏ ଭୁବନେ ଛନ୍ଦିତ ପଦୂରେ ?
ପଥେ ପଥେ ଶତଦଳ
ଫୁଟାଏ ଚରଣ ତଳ
ଚଉଦିଗ ଚହଟାଇ ଚମେଲୀର ଅତରେ
ଆହା ଏ କୁସୁମମଧୁ ବିଳସିତ ପ୍ରହରେ ।

ନିଶିଥିନୀ ଗଲା ଚୁମି ଦିବସର ଅଧରେ-
କନକ ତରଣୀ କିଏ ଭସାଇଲା ସାଗରେ ?
କମଳ ପାଖୁଡ଼ା ଠେଲି
ମଧୁମଧୁ ଗିର ବୋଲି
ଅଳିକୁଳ ଆଳାପିଲେ 'ନବରସ' ଗତରେ
ନିଶିଥିନୀ ଗଲା ଚୁମି ଦିବସର ଅଧରେ ।

ନବରବି ଅଶ୍ଳେଷେ ପୁଲକିତ ଧରଣୀ ;
ମଳୟ ମୃଦୁ ପରଶେ ଶରମିତ ସରଣୀ -
ଶୁଭ୍ର ଆକାଶ ମେଳେ
ସ୍ୱର୍ଣ୍ଣ କିରଣ ଖେଳେ
ନୟନେ ଇସାରା ଦିଅ କିଏ ତୁମେ ସଜନି !
ନବରବି ଆଶ୍ଳେଷେ ପୁଲକିତ ଧରଣୀ ।

ମୃଦୁ ମୃଦୁ ଗାନ ଗାଇ ଛପି ଛପି ଛପିକା,
ସମୀରଣେ ଦୋହଲଇ ଅପଘନ-ଲତିକା;
ଏକାକୀ ମଉନେ ଆସି
ସରମ ସିକ୍ତ ହାସୀ
ଭୁବନ ଦୁଆର ବୁକେ ମାରଇ ଯେ ଟିପିକା-
ମୃଦୁ ମୃଦୁ ଗାନ ଗାଇ ଛଟିକା ଲୋ ଛପିକା ।

ଫିଟିଗଲା ଏ କପାଟ କେଉଁ କର ପରଶେ ?
ଜୀବନ ତଳେ ଜୀବନ ନାଚିଲାଗୋ ହରଷେ ;
ଆସ ଆସ ପ୍ରିୟତମା
କାବ୍ୟ - ଶ୍ରୀ ଚନ୍ଦ୍ରମା !
ପୟରେ ନୂପୁର ବାଜି ବାଞ୍ଛିତ ସରସେ -
ଫିଟିଗଲା ଏ କପାଟ କାହା କର ପରଶେ ?

ମଧୁର ଏ ମଧୁମୟ ପ୍ରଶାନ୍ତ ପ୍ରଭାତେ,
ଆଲୋକିତ ପଥଗାମୀ ବିଶାଳ ମରତେ;
ଫିଟାଅ ଗୀରଷ୍ଟ-ବାସ
ଅଧରେ କଳିକା-ହାସ-
ଆଜ ଯେ ନିଖିଳ-ପ୍ରାଣ ଖେଳିଯିବା ଭୁଶତେ
ଚନ୍ଦ୍ରେ ମୋ ରାଜ ଏଗୋ ଜୀବନର କବିତେ !

---

## ନୀଡ଼ ସଙ୍ଗୀତ

ସନ୍ଧ୍ୟା ସମୀର ଏଯେ ଧରଣୀ ତଳେ
ଶୁଭ ସଙ୍ଗୀତ ଗାଇଉଠେ ସୁପ୍ତ ରୋଳେ,
ବିଶ୍ୱ - ବୀଣା
ଢ଼ାଳେ ପୀୟୂଷ-କଣା;
ଆଜି ଧୂପ ଦୀପ ତୃଣ କୁଟୀରେ ଜଳେ-
ମଧୁ ସନ୍ଧ୍ୟା ସମୀର ଏଯେ ଧରଣୀ ତଳେ ।

ମୁଗ୍‌ଧ ନୟନେ କେ ଗୋ ଝରବେ ଲୁହଁ
ମଧୁ ଗନ୍ଧବଣୀ ଖୋଜେ କାହାର ପାଇଁ ?
ଆସ ଆସ ମଳୟ,
ନାଅ ନାଅ ହୃଦୟ,
ତବ ପରଶେ ଫୁଟୁ ଯଉବନର କଳି
ଲୁହୁ ମୁଗ୍‌ଧ ନୟନେ କେଗୋ ଝରବେ ଲୁହଁ ।

ପଥେ ପଥେ ଘାସ ଆଜ ଟେକଚ ମଥା,
ତା'ର ଅନ୍ତରେ ଲଗିଛି ଯେ ପୀରତି ବ୍ୟଥା,-
ଡାକେ ଆଯ ଗୋ ପ୍ରିୟ,
ଘେନ ମୋର ପ୍ରଣୟ,
ଧରା ଦଅଇ ମତେ ତା'ର ଶୁଭ ବାରତା,-
ବନ ପଥେ ପଥେ ଘାସ ଆଜ ଟେକଚ ମଥା ।

କୁସୁମିତ - ଉପବନ କୋମଳ ବୁକେ,
କୋକିଳ ଫୁଟାଏ ଗିର କେତେ ପୁଲକେ;
ପାଇ ପ୍ରିୟା - ମିଳନ
ରଚେ ପୂରବୀ ଗାନ,
ତନୁ ଚକଣି ଉଠେ ଅତନୁର ଆଲୋକେ-
ଆଜ କୁସୁମିତ-ଉପବନ କୋମଳବୁକେ ।

ଝର ଝର ଝର ଝର ଝରଣା ଝରେ
ଭୃଙ୍ଗ ଗୁଞ୍ଜରଣେ କେତେ ସରମଭରେ ;
ମନ ହରଷେ ତା'ର
ଠାଣେ ଅଶ୍ରୁ - ଗାର;
ପାଦ ଛନ୍ଦତରେ ଭୃଲେ ଶଇଳ ଧାରେ -
ମୃଦୁ ଝର ଝର ଝର ଝର ଝରଣା ଝରେ ।

ଦଶଦିଶ ସୁନ୍ଦର ଫୁଲେ ହସଇ ,
ମଳୟ - ବାତେ ପରିମଳ ନାଚଇ ,
ତାରା ଖଚିତ ନଭେ
ମଧୁ ବେଦନା ଦ୍ରବେ;
ଝିଲ - ଜଳ - ମୁକୁରେ ଭୃହେଁ କୃଷ୍ଣ କଇଁ-
ଦୂର ଦଶଦିଶ ସୁନ୍ଦର ଫୁଲେ ହସଇ ।

ମଜନେ ଗୃହୁଁ ଏଇ ଶୋଭା , ସୁଷମା ,
ମୋର ହୃଦୟେ ଫୋଟି ଆସେ ଘନ କାଳିମା;
ପ୍ରାଣ କା'ରେ ଖୋଜଇ ?
ଆଖି ପାଣି ବୁହାଇ,
ପୋଛୁଦେବ ସେ ମୋର ମଧୁ ଅଶ୍ରୁ କଣା
ଆହା ମଜନେ ଗୃହୁଁ ଏଇ ଶୋଭା, ସୁଷମା ।

ଚ୍ଛିନ୍ନ କରିଛୁ କେଗୋ ଆତ୍ମା ମୋର ?
ବ୍ୟଥା କମ୍ପନରେ ଥରେ ଶୁଷ୍କାଧର ;
ଅଙ୍ଗ ସଂଗୋପନେ,
ବୀଣା ବାଜେ ଗହନେ,
କାହା ଧିଆନେ ସେ ଯେ କହ ଏତେ ବଧୁର ?
ଆହା ଚ୍ଛିନ୍ନ କରିଛୁ କେଗୋ ଆତ୍ମା ମୋର ?

କିଏ ସେ ଡାକେ ମୋତେ ନନ୍ଦନ ପାର
ଦୂର ନଭ - ପଥରୁ ପ୍ରାଣ ହୃଦଧାର ?
ଆଜ ଅସୀମ ଦେହେ
ମିଶିଯିବ ସେନେହେ
ସେଇ ଚରଣ ତଳେ ତାର - ମଙ୍ଗ ଧର -
ଆଜ ଅମର ଗୀତେ ବାନ୍ଧ ଜୀବନ-ତାର ।

---

## ବୁଭୁକ୍ଷିତ

ଜୀବନେ ଆଜ ଯେଉଁ ବତାସ ବହେ
ଜାଣକି ପ୍ରଭୁ ତାହା କେସନ ସହେ ?
ଏ ଦେହ ମାତ୍ର ମୋର
ବତାସେ ଥର ଥର
ହୃଦୟ ଯନ୍ତ୍ରଣା ମନ୍ତ୍ରନେ ସହେ ?
ଜୀବନେ ଆଜ ଯେଉଁ ବତାସ ବହେ ।

ଜୀର୍ଣ୍ଣ କୁଟୀର ଏ ପଡ଼ଲା ଖାଲ
ପ୍ରଳୟ ପବମାନ ପଶୁଛ ଠେଲ;
ତହିଁକି ଆଶା ନାହିଁ
କରୁଣାତବ କାହିଁ ?
ଦଗ୍ଧ କର କରେ ବହ୍ନି ଜାଳ
ଜୀର୍ଣ୍ଣ ମାତ୍ର କପାଁ ପଡ଼ଲା ଖାଲ ?

ଭ୍ରମେଯୁ ଦେଇ ଆଜ ଭୋଗେ ବରନ୍ଧ ?
ହୋଇଚ ମୋ ଜୀବନ ଦୁର୍ବିସହ ?
ଜଗତେ ଏ ଜନମ
କପାଳେ ଏ କରମ,
ଶାପ ଭୋଗିବା ଛଡ଼ା ଅଛି କି ସ୍ନେହ;
ଭ୍ରୂଣେଯୁ ଦେଇ ଏଯେ ଭୋଗେ ବରନ୍ଧ ।

ପୂର୍ବ ଜନମେ ବା କରିଚ ପାପ,
ଭୋଗି ଅପର ଜନ ପ୍ରେୟସୀ ରୂପ,
ନୟନୁ ଅନ୍ଧରନ୍ଧ
ଢାଳି ବେଦନା ଲୁହ,
ପ୍ରଭୁହେ ଦେଇଚକି ଏ ଘୋର ଶାପ ?
ପୂର୍ବ ଜନମେ ବା କରିଛି ପାପ ?

କାହାର ଅବା ସ୍ନେହ ନଦେଖ ହାତେ ?
ଠେଲିଚ ନିଷ୍ଠୁରେ ପଥର ଘାତେ
ଜାଳି ବିରହ ଧାପ
ଦେଇଚ ଅଭିଶାପ,
ପ୍ରେୟସୀ ହୀନ ପ୍ରାଣ ଭୋଗିବ ସତେ;
କାହାର ଅବା ସ୍ନେହ ନଦେଖ ହାତେ ?

ଆରମ୍ଭ କର ପ୍ରଭୁ ମରଣ ହିୟା
ଉପରୁ ନାବେ ଆଜ ନାଚୁଏ ଛାୟା;
ଏ ମୋର ପ୍ରାଣ ଗୁରୁ
ବୋହିବା ଗୁରୁଭାର
ଅନଳେ ଯାଉ ଜଳି ଏ ମୋର କାୟା
ଆରମ୍ଭ କର ପ୍ରଭୁ ମରଣ ହୀୟା ।

---

## ବିରହ ବୀଣା

ଗୋଧୂଳି ଲଗନେ ଶିହରି ଉଠଇ ବିରହ ବୀଣା ;
ରୁଦ୍ଧ ଅବସାଦ ଦୁଃଖଭରା ଗୀତି, ନାହିଁ ଫୁରୁଣା ।
କାଲି ବୀଣା ଗାଉଥିଲା ଗୋ ହସି
ପ୍ରିୟା ମଧୁ ଆଳାପନାରେ ରସି,
ଆଜ ଉଠି ତହିଁ ତିକ୍ତ ପ୍ରତିଧ୍ୱନି ହୃଦୟ ହଣା
ଝୁରାଇ ଲୋତକ ପ୍ରେମ ପଥେ କରେ ମାନସ ବଣା ।

ବସନ୍ତ ଚେତନ ଚନ୍ଦ୍ରିକା-ବିତାନ-ଗଗନ ତଳେ
ବନେ ବସି ସୁଖେ ରାଗ ଗୁରୁକେଶୀ ଆଳାପି ଭୋଳେ;
ଗାନ୍ଧାର ପଞ୍ଚମ ମଧ୍ୟମ ସ୍ୱରେ,
ଉଦାତ୍ତ ଝଂକୃତ ନିସ୍ୱା ହମରେ;
ଛିପି ମୋ ଅଙ୍ଗୁଳି ବିପଞ୍ଚୀ ପ୍ରବାଳେ ଗର୍ଜିବା ବେଳେ ।
ମଧୁର ଚୁମ୍ବନ ଦେଇ ରେଖା ଖେଳାଇଲି କପୋଳେ ।

ଆଜି ଏ ବିଷାଦ-ବିଧୁର-ବୀଣାର ଛିଣ୍ଡିଛନ୍ତି ତାର ,
ଅପଶ୍ରୁତି ନାଦ ବୁକୁରେ ବାଜୁଛି ଉଗ୍ର ଜହର ;
ବଜାଉ ବଜାଉ ବଲ୍ଲକୀ କରେ ,
ନ ଚଳୁଛି ଆଉ ଅଙ୍ଗୁଳି ଥରେ ;
ଅବଶ ଶରୀର ଥରଇ ନୟନ ବହୁଛି ନୀର ;
କରୁ ଖସି ବନ୍ଧୁ ତଳେ ସୁପ୍ତ ଆଜି ବିତନ୍ତ୍ରୀ ମୋର ।

---

# ମୀମାଂସା

ଅର୍ଦ୍ଧ ମୁକ୍ତ ବାତାୟନ ଧାରେ ବ୍ୟଥାତୁରେ କେ ରହିଛି ଚାହିଁ ?
କହ କିବା ନିବେଦନ ତହିଁ ? କେଉଁ ଅଜଣାର ସ୍ପର୍ଶ ପାଇଁ ?
କାହାର ବିଜୟୋତ୍ସବ ଧ୍ୱନି ଶୁଣି ତାର ଆଜି ସ୍ୱପ୍ନ ମୟ ?
ପଲକତ ପଡ଼ୁନାହିଁ ଥରେ, ଅନିଦ୍ରିତ ନେତ୍ର-କୁଶେଶୟ ।
ଚଉଦିଗ ସୁପ୍ତ, ବିଜଡ଼ିତ —
ପ୍ରଶାନ୍ତର ନୀଳ ମୂର୍ତ୍ତିରେ ଦିଗ୍‌ବଳୟ ବନ୍ଦିତ ।

ନଭସର ପାନ୍ଥଶାଳେ ଆଜି ନେଲେ ଯେ ଆତିଥ୍ୟ ତାରାପୁଞ୍ଜ;
ବିହ୍ୱଳରେ ବିରଚିଛନ୍ତି ଆହା କ୍ଷଣିକର ସ୍ୱପ୍ନ ନୀଳ କୁଞ୍ଜ;
ମୃଦୁ ମୃଦୁ ଗୀତ ଗାଇ ଗଲେ ବିଶ୍ୱ କକ୍ଷେ ପ୍ରଶ୍ନର ପ୍ରଣୟ;
ଜୀବନ ଭରାଇ ଅଭିସାର-ବାୟୁ ସେ ଯେ କେଉଁ ଅଭିନୟ ?
ପଲକତ ପଡ଼ୁନାହିଁ ଥରେ —
କେଉଁ ପ୍ରୀତି ପାଇଁ ତୁରେ ଅଛୁ ଉଜାଗରେ ?

ଚକିତ ମଳାନ୍ତରାକ୍ଷେ ଉଦେ ସତ୍ୱର୍ମୀର ରୌପ୍ୟ ଖଣ୍ଡ ଶଶୀ;
ଅଖଣ୍ଡିତ ଆତ୍ମା ସମ ଆସେ ଶୁଭ୍ର ଜ୍ୟୋତ୍ସ୍ନା ହୃଦ ମଧେ ପଶି;
ଧରଣୀ ପ୍ରାଙ୍ଗଣେ ଲେଟେ ଧୀରେ କଜ୍ଜମୁଗ୍ଧ ବିରହିଣୀ ପ୍ରାୟ;
କେ ଜାଣେ କାବ୍ୟ-ନାୟକ ମନ ? କବର ଏ ସିନା ଅଭିପ୍ରାୟ-
ଜଗତ ଏ ବିବର୍ତ୍ତନ ବାଦ —
ବାଧା-ବିଘ୍ନ, ସୁଖ-ଦୁଃଖ, ପ୍ରାଣ ପ୍ରମାଦ ।

ତାରାପଥେ ଝରି ଆସେ କେଉଁ ରାଇଜର ସ୍ୱଚ୍ଛ ପ୍ରସ୍ରବଣ,
ନଣବଦ୍ଧ ନଶି ବୁକେ ଲଗେ କଳ୍ପନାର ମୁକ୍ତ ପ୍ରସାରଣ,
ମାଳ ଶେଳ ଚୂଳେ ଫୁଟେ ଭାଷା ଅଗଣିତ ଅସ୍ପଷ୍ଟ ଚମ୍ପୀର-
ମିଳନର ମନ୍ତ୍ରାମନ୍ତ୍ର କି ସେ ? ଅଜ୍ଞାତର ସକରୁଣ ଗିର ?
ପଲକତ ଚେତନାହୁଁ ଥରେ,
ଜଟିଳ ଏ କବି ପ୍ରାଣ ନଚେ ଉରମରେ ।

ଗବାକ୍ଷର ପାଶ୍ୱେ କୃଷ୍ଣଚୂଡ଼ା ନବ ପତ୍ରାବୃତ, ପୁଷ୍ପଭର-
ଧର ବକ୍ଷେ ସୃଜେ କ୍ରୀଡ଼ାରତ ଗ୍ରୀଷ୍ମାଲୋକ ବଚନ, ହୃଦର;
ଚରାଚର ବାହ୍ୟେ ସ୍ତବ୍ଧ ଶାନ୍ତ, ଅନ୍ତରେ ଲୁକ୍କାୟିତ ବେଦନା !
ଚିରନ୍ତନ ଭେଦାଭେଦ ସୃଷ୍ଟି — ସର୍ଜନର ଅଦ୍ଭୁତ କଳ୍ପନା !
ଦୁର୍ବା ପରେ ଝରିଆସେ ଜ୍ୟୋତ୍ସ୍ନା-
ନିରନ୍ତର ବ୍ୟାକୁଳତ, ଅତୃପ୍ତ କାମନା !

ଭ୍ରହୁଁ ଭ୍ରହୁଁ ଉଦ୍ଧ ଗଲା ଲୁଚି ଶୀର୍ଣ୍ଣ-ଶ୍ୱେତ-ଖଣ୍ଡ-ମେଘ-ଫାଙ୍କେ;
ବ୍ୟୋମପଥେ ଉଡ଼ିଗଲା ପକ୍ଷୀ ନିର୍ନିମେଷେ ରହେଁ ଆଡ଼ବାଙ୍କେ-
ଗବାକ୍ଷ ମୂକୁଳି ଗଲା ଧୀରେ ଅନ୍ତରର ଗଭୀର ନିଶ୍ୱାସେ;
ବେପଥୁ-ଶ୍ଲଥ ଶୀତଳ କର ଅଶ୍ରୁପ୍ଲୁତ ଗଣ୍ଡକୁ ଆଶ୍ୱାସେ;
କେଉଁ ଅନୁଭବ ପାଇଁ ସତେ,
ଅନାଇ ରହିଛି ସେ ଯେ ବାତାୟନ ପଥେ ?

ବାଣୀର ତନ୍ତ୍ରୀ ମିଳନ ରଚ ଯତନେ ସାଇଛି ଥିଲା ଯେ ନାୟକ-
ପ୍ରିୟା ଆଗମନେ ଗାଇ ଯିବ ଦେଇ ଅଭ୍ୟର୍ଥନା ତରୁଣ ଗାୟକ ।
ସିକ୍ତବାତେ ଶ୍ରୁତିଯୁକ୍ତ ତନ୍ତ୍ରୀ ହେଲା ମେଳଭ୍ରଷ୍ଟ ତୂଳୀଶଯ୍ୟାପରେ-
ମନ୍ଦର ଯେ ଉତ୍ସୁକ ଅଭ୍ୟାସେ, ଭୁଟିଗଲା ତାର ଅକାତରେ-
ପଲକତ ପଡ଼ିଲା ଅଧୀରେ—
ସ୍ୱପ୍ନମୟ ଭବ-ପୁରେ ପ୍ରିୟା ନାହିଁ କରେ !

ବ୍ୟର୍ଥତାର କଷାଘାତେ ଶତ ଅବଶ ଭଜିଲା ମିତ୍ରମାଣେ —
ଆକାଶର ଗତିଶୀଳ ମୁକ୍ତ ବିହଙ୍ଗର କିଏ ବେଦନା ହାଣେ ?
ଅସହାୟ କ୍ଷୁବ୍ଧ ଶିଶୁ ତୁଲ୍ୟ ସ୍ଫୁରଲନ ବିଳାପ ଗାୟନ;
ମର୍ମେ ତାର ବୁହାଇଛ ଏକ ବାସ୍ତବର ନିଷ୍ଠୁର ଚନ୍ଦନ;
କବି ପ୍ରାଣେ ଦେଲା କେ ସମ୍ବଳ ?
ଜୀବନ୍ତ କବିତା ମଧ୍ୟେ କାହୁଁ ଥିବ ଛଳ ?

ପ୍ରଣୟର ମମତା ବନ୍ଧନ, ପାଶବଦ୍ଧ ନିଭୃତ ନିବିଡ଼ —
ଖୋଜି ବୁଲେ ଶୀର୍ଣ୍ଣ ଦୃଷ୍ଟି ଇତସ୍ତତ ଚିରଶ୍ରିତ ନୀଡ଼ ;
ନିଳୟେ ଯେ ଲଗିନ ପ୍ରଦୀପ, ଅନ୍ଧକାର ଘେରିଅଛି ଖାଲି ,
ଦୀର୍ଘଶ୍ୱାସ ମିଶିଯାଏ ନଭେ ଯେ ପଥେ ସେ ଯାଇଛି ଗୋ ଗୁଳି ;
ବାଷ୍ପରୁଦ୍ଧ କଣ୍ଠ ଫିଟିଯାଏ —
ପ୍ରିୟାର ଯାଚା ସଙ୍ଗୀତ ନବ କବି ଗାଏ ।

---

## ପରାଣ ହେଉ ମୋର ନୀରବ

ସାଂଧ ଚହଳ କାକଳିଗହଳ ଦିନାନ୍ତ ଶୋକ ଗୀତିକା,
ହିମ ବିମଳିନ ବିଷର୍ଣ୍ଣ ରବି କଂପିତ ପ୍ରାଣ - ଦୀପିକା ;
କ୍ଳାନ୍ତ ଧୂସର ଆଲୀଢ଼ ଅୟନେ,
ଉଷା ବାହୁଡ଼ଇ ମଳିନ ବଦନେ;
ଫେରନ୍ତି ଧେନୁ ମାଳିକୀ,
ଦୁର୍ବାଶ୍ୟାମଳ ପଲ୍ଲୀ ଅୟତନେ ପ୍ରଶାନ୍ତ ନିରବଧିକା ।

ଦୂରବନ ଶେଷ ଶ୍ୟାମ ବିସ୍ତୃତ ଅଙ୍ଗନେ ରବିକରଣ,
କ୍ଷଣିକ ଆଲୋକେ ଝଲସେ ଯେହ୍ନେ ପ୍ରାବୃଟ ଜ୍ୟୋତିରିଙ୍ଗଣ,
ବିହ୍ୱାପ୍ଲୁସ ଧରା ଅଭ୍ୟନ୍ତର,
ମନ୍ଦ ଶୀତଳ ଅଚଳ ସମୀର,
ଲତା କୋଳେ ଝିଲ୍ଲୀ ନିସ୍ୱନ,
ନିଖିଳ ଧରଣୀ ବିଷାଦ ରଗିଣୀ ପ୍ରଥମ ଶୁଭଇ କରୁଣ ।

ଶଇଳକକ୍ଷ ଭଗ୍ନସଉଧ ଦୋଳିତ ମାଧବୀ ବ୍ରତତୀ, —
ବିଯୋଗ ବିଧୂରେ ତହିଁ ନାହିଁଝରେ ମଧୂର ଉଷ୍ମ ପୀରତି;
ଧରଣୀ ବଣୀର ମୃତ ଅପଘନେ,
ମାଳ ଉତ୍ତରୀ ଆଚ୍ଛାଦ ଘଂନେ,
ସୁମରି ବିଗତ ସ୍ମୃତି,
କୌଶିକ ଗାଏ ମୃତ୍ୟୁ ଗୀତିକା ଡୋଳାଇ ଚନ୍ଦ୍ରେ ଆରତି ।

ଚିର ଦୁଖମୟ ଜଗମୟୁକାଧ୍ୟ ବଟତରୁ ଶ୍ଳଥ ଶୀତଳ,
ବଦନ ଦୋଳିତ ଶ୍ମଶ୍ରୁ ନିରତ ସାଧୂପ୍ରେତମ ଅଚଳ,
ଭୁମ ପଲ୍ଲବ ବାହୁଚ୍ଛାୟା ତଳେ,
ବସୁଧା ମାତାର ସୁକୋମଳକୋଳେ,
ପ୍ରେୟସୀ ଜୀବନ-କମଳ,
ଅନ୍ତ୍ୟ ବିଲୟ ଲଭିଥିଲ ଯେଦିନେ ଜୀବନ କରି ମୋ ବିକଳ ।

ପ୍ରାତ ସୁରଭିତ ମଳୟ ମାରୁତ ସୁକୋମଳ ପରଶୀଳନ,
ବିହଗଦଳର ସଙ୍ଗୀତକଳ କଳ କଳ ମଧୁ ନିସ୍ୱନ;
କୁକ୍‌କୁଟ ଭାଟ ସ୍ତୁତି ଆଳାପନା,
ସଗଡିଆ ଗୀତି ମଧୁ ମୂର୍ଚ୍ଛନା,
ନରଚିବ ଛଳେ ସ୍ପନ୍ଦନ,
ସମାଧି ତଳ୍ପ ଉପରେ କଲ୍ପ କଟିଚ ଶାନ୍ତ ଶୟନ ।

ତୁମରକୋଳରେ ମଥା ଲଚ୍ଛି ଧୀରେ ଶିଖିଲି ପ୍ରଣୟ ସାଧନା,
ଜୀବନ ଦୁଃଖ ଅପମାନ କଷ୍ଟ ଲଭିଥିଲି ସମବେଦନା,
ଯାକୁ କରୁଥିଲ ଅତି ଆପଣାର,
ତାହାକୁ କେସନ କଲ ଅନ୍ତର,
ଦେଇ ଗଲ ଚିର ଯାତନା,
ସଂକ୍ଷିପ୍ତ ତମ ଜୀବନ ବରଜ ଜାଳି ଦେଲ ମନ କାମନା ।

ତୁମ ରୂପ-କଳା ଦାବାନଳି ଭଳି କରେ ଯେଉଁ ଲୋତକାର୍ପଣ,
ଅନ୍ତ୍ୟ ସମାଧି ପୀଠରେ ଅବଧି ସୃଜିବକି ଝର-ତର୍ପଣ !
ଅତୀତ ମଧୁର ସଙ୍ଗୀତ ସ୍ମୃତି,
ବ୍ୟସ୍ତ ଜୀବନ ବେଦନା ଆରତି,
କରେ ଯେଉଁ ଶୋକ ତର୍ପଣ,
ମରଣ ଆଘାତେ ବଧିର ଶ୍ରବଣ ଶୁଣିବକି ତାର ବର୍ଷଣ ?

ଶ୍ରେଷ୍ଠ କରି ତୁମ ଜୀବନ ନାଶିଲା କଠୋର ମୃତ୍ୟୁଦେବତା,
ଘୃତଭରା ଦୀପ ନିଭିଲା ହଠାତ୍ ରଖି ଅନୁତାପ ସଳିତା,
ଆତ୍ମ ତରସ ଯୌବନ ଦାନ,
ପ୍ରଗାଢ଼ ମମତା ପ୍ରୀତିବନ୍ଧନ,
ନପାରେ ତ ଆଉ କଳି ତା'
ହେ ଜୀବନ ! ତୁମ କରମ ଲିଖିତ ଲେଖିବାକୁ ଶୋକ କବିତା ।

ଯେ ଭୂମି ଉଦରେ ଶାନ୍ତ ମଧୁରେ ପାଉଚ ଅଲେଖ ଗୌରବ,
ସେଇ ଶେଯେ ମୋର ଏ ମର ଶରୀର ହେଉ ସୁଖୀ ଶବ ନୀରବ,
ତୁମର ବିଭୂତି ଜ୍ୱଳନ୍ତ ତୃଷା,
ଜାଳି ପୋଡି ଦେଉ ବିକ୍ଷତ ଆଶା,
ପରଶ ହେଉ ମୋ ନୀରବ,
ତୁମର ଶାନ୍ତ ସମାଧି ବୃନ୍ତେ ପ୍ରୀତି ଫଳ କରୁ ପ୍ରସବ ।

---

## ଶେଷ ମୂର୍ଚ୍ଛନା

ଶିଥିଳ ଶାନ୍ତ ଅମ୍ବରେ          ମଉଳ ମୃଗାଙ୍କ ଝୁରେ,
ଶେଫାଳି ସମୀରେ ଥରେ ବିରହ ଶ୍ୱାସେ:
ନତ ଦୂର୍ବାଦଳ ଚୂଳେ          କୁନ୍ଦେନ୍ଦୁ ତୁଷାର ଛଳେ,
ରଜନୀ ରାଣୀ କି ଢାଳେ ଅଶ୍ରୁ ବରଷେ;
ବଧିର ଏ ବିଧାନ ଯେନ
ଆତଙ୍କିତ ଧରଣୀରେ ନର କରଣୀ ।

ସିକ୍ତ ପଉବନ-ତାରେ          ବାଜିଲା ବଧିର ସ୍ୱରେ
ମୃତ୍ୟୁର ପ୍ରଚ୍ଛନ୍ନ ଛାରେ ବିଷାଦ ଗୀତି;
ତାହାର ମୂର୍ଚ୍ଛନା ଧରି          ଗାଇଲ ଗୋ ସୁକୁମାରି !
ବିହ୍ୱଳ ହୃଦୟୁ ଚିରି ପ୍ରଖର ସ୍ୱାତି;
ଯାତେ ଅପଘନ ମଳିନ
ବିବଶ ହେଲିକି ସତେ ଶୁଭ୍ର ନଳିନ ।

ନିଖିଳ ବିରହ-ଝଡ଼ ଲଭି କା'ର ଅଭିଶାପ
ଜଳିଲି ଗୋ ଦପ ଦପ ମୋର ଅନ୍ତରେ ;
ତେଜିଲି ଧରଣୀ କୋଳ ନେତ୍ର କରି ଛଳ ଛଳ
ଛୁଟାଇ ପ୍ରୀତି-ମୃଣାଳ ମରଣ ଧାରେ;
ବିମ୍ବାଧରେ ବିଦାୟ ରେଖା
ବିଦ୍ୟୁଲ୍ଲତା ସମ ଲଭେ, କ୍ଷଣିକ ଲେଖା ।

ମିଳନେ ସୀମନ୍ତ ଶିରେ ଯତନେ ଯେ କର ଥରେ
ଆଙ୍କିଲି ବନ୍ଧୁ ସିନ୍ଦୂରେ ମଧୁ ମଙ୍ଗଳେ,
ଆଜି ସେ କର କାହିଁକି, ବହ୍ନିରେ ଦହିଲା ନିକ
କେସନ କୁଙ୍କୁମ ଲେଖି ଦେଲା କପାଳେ
କ୍ଷତ ବୁକୁ ତଳ ରୁଧିର
ଜୀବନ ସରଣୀ କଲା ପିଚ୍ଛିଳତର ।

ଶତ କଳପନା ବନ୍ଧେ ମନାଇଥିଲି ଆନନ୍ଦେ
ଆଶାର ବଲ୍ଲରୀ ଛନ୍ଦେ ସୁଧା ସଞ୍ଚରେ;
ଆକାଶ-କୁସୁମ ସମ ହେଲା ତିକ୍ତ ପରିଣାମ,
ଖାଲି ତା' ସ୍ମୃତି ନିର୍ମମ ହୃଦୟେ ଜାଗେ;
ବ୍ୟର୍ଥ ମୋର ପୂଜା ଯତନ
କୋମଳ ପରଶ ଲଭେ ଅହି ଦଂଶନ ।

ଯେଉଁ ଅଜଣା ଅୟନେ ଯାଇଛି ମୁକ୍ତି ସଦନେ
ଝରାଇ ଶୂନ୍ୟ ଗହନେ ଚରଣ ରେଣୁ,
ସେଇ ପଥ ଅନୁସରି ବାନ୍ଧବ ଦଦରା ତରୀ
ବଜାଇ ବ୍ୟଥା-ମାଧୁରୀ ବିରହ ବେଣୁ ;
ସାଥି ହରା କପୋତ ସମ
ବିଳପେ ମୋ ଛିନ୍ନ ପ୍ରାଣ ଦିବା ନିଯାମ ।

---

## ନିସର୍ଗ ସଙ୍ଗୀତ

ଫହ୍ଲିଲ ବସନ୍ତର ଫାଲ୍‌ଗୁଣ ମହୋତ୍ସବେ
କୋକିଳ କୁହୁତାନ ଛୁଟିଲା ଅଭିନବେ ।

ତୁମେ ସେଇ ମୋ ପ୍ରିୟା କଲ ମଧୁଅର୍ଚ୍ଚନା
ଅଧର ପୁଟେ ଭରି ସୋହାଗ ଅଭ୍ୟର୍ଥନା ।

ଧୀରତ୍ତ ପିଞ୍ଜ୍ରେ ଥାପି ପୁଷ୍ପପ୍ରଣୟୀ ପ୍ରାଣ
ନୟନେ ନଚ୍ଛଇଲ ମଳୟ ପ୍ରସ୍ଫୁରଣ ।

କୁସୁମେ ଦେଲ ଭରି କନକ ମନୋରମା;
ସବୁଜ ଦୁର୍ବାଦଳେ ନବୀନ ଶ୍ୟାମଳିମା ।

କାସାର ବକ୍ଷେ ଦେଲ ଫୁଟାଇ ଇନ୍ଦୀବର ;
ମରୁ ପ୍ରାନ୍ତେ ବାହିଲ ମଧୁର ବେଣୁ ସ୍ୱର ।

ସେଇ ତୁମେ ମୋ ପ୍ରିୟା ଯା’ ପାଇଁ ଗାଏ ଗୀତ;
ଛୁତମା ଆଙ୍କିଥିଲ ଯା’ ହୃଦେ ଅବିରତ ।

ସେଇ ତୁମେ ମୋ ପ୍ରିୟା ଯା' ପାଇଁ ଏ କବିତା;
ଅରୁଣାକାଶେ ଲଭି ଯାଇଛି ମୋ ସବିତା ।
ଅମ୍ଳାନ ବରମାଲ୍ୟ ଲମ୍ବାଇ ମୋର ଗଳେ
ଅମ୍ଳାନ ନିଦ୍ରା ଗଲ ବନ୍ଧୁର ଧରା କୋଳେ ।
ପ୍ରତି କୁସୁମ ତହିଁ ଜୀବନ୍ତ ଅଫୁରନ୍ତ;
ଭୁଞ୍ଜାଇ ଦେଲ ସଖି ଜୀବନ-ସୁଖ-ବୃନ୍ତ ।
ଦୁଇ ବରଷ କାଳ ଅଗୀତ- ସଙ୍ଗୀତ-ମାଳା
ହୃଦୟ ତଳେ ରଚେ ବିରହ ରୁଦ୍ର ଲୀଳା ।
ନୈସର୍ଗିକ-ସଙ୍ଗୀତେ କରଇ ଆଳାପନା,
ବଧିର ହୃଦୟର କରୁଣାନ୍ତ ସେଦେନା ।
ଭଗ୍ନ ବେହେଲ ମୋର ତୋଳି ଧରୁନ ସୁର;
ଅପସୃତ ନିନାଦେ ଛୁଟିଛି ତନ୍ତ୍ରୀ ତାର ।
କେ ଦେବ ତହିଁ ପୁଣି ପ୍ରାଣର ଚେତନା ?
ମୋ ହାତେ ଅଛି ଯେତ ଗାଇବାକୁ ବେଦନା ।
ଗଲ ଯେ ଗଲ ପ୍ରିୟା ସମାଧି ତଳେ ମିଶି;
ଜୀବନେ କଲ ମୋତେ କବର-ଧୂଳି-ରାଶି ।
ବୁକେ ଜଳାଇ ଗଲ ଅଖଣ୍ଡ ମହାଦୀପ
ସେ ଦୀପ ତଳେ ଆଜି ଭୋଗଇ ଅଭିଶାପ ।
ଅଶ୍ରୁଳ ବିରହକୁ ଦେଲ ଗୋ ପୁରସ୍କାର
ବିରହୀ ଗାଏ ଗୀତ ଢ଼ାଳି ଯେ ଅଶ୍ରୁଧାର ।
ଜୀବନେ ଅଛି ମୋର ଆଉ କି ଦଶା କହ ?
ହାୟ ବିଧାତା ! ଏହି କଷ୍ଟ କି ଦୁର୍ବିଷହ !

---

# ଅଶ୍ରୁ ସାଧନା

ଭୁବନେ ଯେବେ ମଧୁ ଲହରୀ ନାଚଇ ତାଳେ,
ଚନ୍ଦ୍ରିକା କୋଳେ, ଗଗନ ମେଳେ, ସମୀର ଦୋଳେ,
ବାତ-କଂପିତ-କହ୍ଲାର-ଘାସେ,
ପ୍ରାତ-କମଳ-ଈଷିତ-ହାସେ ,
ସବୁହିଁ ବ୍ୟର୍ଥ ପ୍ରିୟା ବିହୁନେ ପ୍ରୀତି ବିଫଳେ ,
ଭୁବନେ ଯେବେ ମଧୁ ଲହରୀ ନାଚଇ ତାଳେ ।

ବିଷାଦ ଭରେ ବିକଳେ ବାଜେ ଖେଦ ରାଗିଣୀ,
ଶୃଙ୍ଗାର ସୁରେ ନଶୁଣି ତୁମ ଲଳିତ ବାଣୀ,
ପ୍ରଣୟ ସାଜ ନୋହୁଛି ଲେଉଡ଼ା,
ମଉଳି ଯାଏ ମଲ୍ଲୀ ପାଖୁଡ଼ା,
ଅଳି ସଂକୁଳ କୋକିଳ କଳ ଦେଉଛି ହାଣି,
ବିଷାଦ ଭରେ ବିକଳେ ବାଜେ ଖେଦ ରାଗିଣୀ ।

ଅଯୂତ ଯେବେ ଦିଏ ଆଘାତ କୋମଳ ବୁକେ ,
ରୋଧି ଦିଅ ସେ ଅସିର ଧାର ସ୍ନେହ-ଫଳକେ ;
ହୃଦୟ ମୋର କରେ ବନ୍ଦନା,
ଢାଳ ଯେ ସଖି ସମବେଦନା,
ଆଜ ସେ ଭାଗ୍ୟ ନାହିଁ କପାଳେ, ମରଇ ଶୋକେ,
ଭୁବନ ଆହା ଥରାଇ ମୁଁ ଯେ କୁରର ଡାକେ ।

ଧାରା-ଶ୍ରାବଣ, ଶିଶିର ନିଶି, ନିଦାଘ-ରାତି,
ପ୍ରିୟା ପରଶ ବନ୍ଧନେ ସତେ ସିବକ ବତି ?
ବିଶ୍ୱ-ସାଗରେ ବାହୁଛି ତରୀ
ଉନ୍ମାଦ ନୃତ୍ୟେ ଉଠେ ଲହରୀ,
ଜୀବନେ ଝଞ୍ଜା ବହଇ ଖରେ ଡରାଇ ଗ୍ଲତି,
ଭ୍ରାନ୍ତ-ପଥିକ ଆଜ ମୁଁ ବିଶ୍ୱେ ନାହିଁ ମୋ ସାଥୀ ।

---

## ବିଷାଦ ଆରତୀ

ଉଚ୍ଛ୍ୱସି କଳ କଳ ତରଣୀ ଝଳମଳ
ଦରଜ-ବୁକେ ଆଜି ବେଦନା ଢାଳେ,
ଜ୍ୟୋଛ୍ନା ଢଳ ଢଳ ବଉଦ କୋଳେ
ଆଜି
ରଙ୍ଗେ ଭଙ୍ଗେ ଖେଳେ ଦୁର୍ବାଦଳେ ।

ସମୀରେ ମିଶି ଗାଏ ବିରହ ଗୀତି
ଦୁଇ ବରଷର ଅତୀତ ସ୍ମୃତି;
ସମାଧି ତଳେ ପ୍ରଦୀପ ଜାଳେ
ଶେଷ ଜୀବନର ନୟନ ଜଳେ ।

ଗୋଧୂଳି ବେଳେ ବାଜେ ବିରହ ବେଣୁ;
ଝରାଇ ବୁକୁ ତଳୁ ରୁଧିର - ରେଣୁ,
ରୁଧିର-ରେଣୁ;
ଝଡ଼ ପବନେ ମଜ୍ଜ ଉଠଇ ଥରି,
ଟାଳେ ଟାଳେ ନାଚେ ଜୀବନ-ତରୀ;
ମାଗେ ବିଦାୟ
ମାଗେ ବିଦାୟ
ଶେଷ ପ୍ରହରର ଚକ୍ରବାଳେ ।

---

## ପରିତାପ

ପଉଷର ପ୍ରଦୋଷରେ
ମଳି-ନଭ-ବକ୍ଷରେ,
ବାରବାମା ରେଖା ଆଜି ଦିଶିଲା;
ସ୍ମୃତି କା'ର ଅନ୍ତରେ କଷିଲା ?

ବନ-ତରୁ-ଲତା-ଶିର
ଶିର-ଶିର ଝିର-ଝିର,
ଝରିଲା ଯେ ଅରୁଣିତ ମୟୂଖ;
ହୁଡ଼ିଯିବା ପଥ କାହିଁ ସଳଖ ?

ପ୍ରିୟଙ୍ଗୁ-ଲତା ଧୀରେ
ଉଭା ହୋଇ ନତ ଶିରେ,
ନେତ୍ର କୋଣରେ ଠାରି ଅଳପ
କହୁଛି କି 'ତୁମ ପଥ କଳପ' !

ଘବାବେଶେ ଥରହର
ଆଶାସ୍ପନ୍ଦିତ ଅନ୍ତର-
କାସାରେ ନଚିଲି ସାରସ ମୁଖ;
ଥକିଲି କ୍ଳାନ୍ତ କେଉଁ ପଥିକ ।
ଚଞ୍ଚଳ ବେଗେ ଅନ୍ଧାର
ଚଳାଇ ଚରଣ ତାର,
ଆସିଲି ତନୁକୁ ଧୀରେ ପରଖି;
ନିଃସ୍ୱ ଯେ ତାକୁ କଏ ଉଦରେକ ?
ହଜିବା କେତେ ବାରତା-
ପୂର୍ଣ୍ଣ ପ୍ରଣୟ ଗୀତା-
ଭଙ୍ଗିରେ ତା' ସ୍ମୃତିଟି ଯେ ଉଜ୍ଜ୍ୱଳ
ମାନସୀର ସେ ନୟନ-କଜ୍ଜ୍ୱଳ ।
ଅନ୍ତରର କଠୋରତା
ଯା'ରେ ଦେଇଥିଲି ବ୍ୟଥା-
ଆଜ ପାଲଟିଛି ଅତି କୋମଳ-
ଶୈବାଳ ସମ ମୃଦୁ ପିଚ୍ଛିଳ ।
କେତେ ଘୋର ଅପମାନ-
କରି ତା'କୁ ପ୍ରତ୍ୟାଖ୍ୟାନ-
ନୟନୁ ବହିଲି ଲୁହ-ଝରଣା
ଝରାଇଥିଲି ନବୀନ୍ଦୁ କରୁଣା ।
କେତେ ଯେ ପୀରତି ତା'ର
ନକରି ହେ ସମାଦର -
କେତେ ହୃତ କଥା ଭଲ ନପାଇ
ପାଦେ ଚଳକି ଆସିଲି ପଳାଇ ।
ମୋ ଦୁଖେ ଯେ ଦୁଃଖିତ,
ସୁଖେ ଥିଲି ହରଷିତ
ତା'କୁ ମୁଁ ଭ୍ରମ ବୁଝିଲି ସଂଦେହେ
କପାଳ ଯେ ମୋର ସଖା ମଂଦହେ ।

ଅପର କୋଳାହଳେ
ମାତିଲି ହଳାହଳେ-
ଶୁଣିଲି ନାହିଁ ତା' ସ୍ନେହ ଡ଼ାକଯେ,
ଅନୁତାପ ଖାଲି ଆଜ ବଦନେ ।
ନୟନ-ଜଳର ମୂଲ
ଏତେ କଲି କଳବଳି-
ଯାତନା ଦେଉଛୁ ଫୁଲ ଗୁଡ଼ିରେ
ତେଣୁ ମୁଁ ଡ଼ାକଇ ଲୁହ ନଡ଼ରେ ।
ନୀଳ ଆକାଶର ଶଶୀ
ଆସି ମୋ ସମୀପେ ହସି,
ଯନ୍ତ୍ରଣା ସହି ସହି କରମେ
ସ୍ମୃତି ରଖିଗଲା ମୋର ମରମେ ।
ଅଜଣା ଅସ୍ପନ ଦୂରେ
ଚାଲିଗଲା ସେତ ଖରେ;
ତା'କୁ ମୁଁ ଖୋଜଇ କେତେ ଆକୁଳେ !
ବନ ବୁକେ କୋକ ଡ଼ାକେ ବକଳେ !
ସଜ କୁସୁମର ଡାଲି-
ପୂଜାରେ ଲଗିନ ମାଳା,
ଗୁହିଁ ଗୁହିଁ ପୂଜାରଣୀ ମରଚ;
ମରୁ-ପଥେ ନିର୍ଝର ଥମିଛୁ ।
ଚଉଦଗ ମାରବକା
ଉଠାଇଣ ନଚୂଳିକା,
ଦେଖିଲି ଯେ ଜୀବନର ନାଟିକା,
ଆହା ମୋର ଗର୍ଭାଙ୍କ ନାୟିକା ।
ମୁକ୍ତାତ ଗଲା ହଜି--
ଶୁକ୍ତିକା ଖାଲି ଆଜ
ଶୁଷ୍କ ପୁଳନେ ଆହା ଲୋଟୁଛି;
ଚୁମ୍ବ ସାଗର ମାଡ଼ ଆସୁଛି ।

ଆଜି ଏ ନଶୀଥେ ମନ
ଆକୁଳେ କର ଆକ୍ରନ୍ଦ
କୁଆଶର ପ୍ରାଚୀ ନଭେ ଉଦିଲା;
କ୍ଷୀଣାଲୋକେ ପଥ ଦେଖି ଆସିଲା ।
ଶ୍ରାନ୍ତ ପଥରେ ପୁଣି
ପାନ୍ଥ ଚରଣ ଗଣି
କାନ୍ତାର ପଥ ଆଜି ଧରିଛି;
ଶିଶିର ବୁକେ ତା'ପାଦ ଥରିଛି ।

---

## ଭୁଲିଯାଅ !

ଜୀବନର କରୁଣ କାହାଣୀ
ଭୁଲିଯାଅ ପ୍ରିୟ ;
ଶୁଣ ମୋର ବ୍ୟଥିତ ମାଗୁଣି ।
ଏହି ଦେଖ -
ପ୍ରକୃତି ରାଣୀର
ପବିତ୍ର ବିଶାଳ ଉତ୍ସଙ୍ଗେ
ପ୍ରଭାତର ସଘନ ପାଟଳିମା;
ନୀଳ ପ୍ରଶାନ୍ତ ଗଗନେ ସମୁଜ୍ଜ୍ୱଳ ସବିତା;
ଶୈଳ-ସାନୁ ନିତମ୍ବ ଚୁମ୍ବିତ
ନିର୍ଝରଣୀ-ବେଣୀ ;
ଆଜି
ଗଭୀର ସ୍ୱପ୍ନମୟ ନଦୀତଟ ଦେଶ;
ଦୁର୍ବାଦଳ ମର୍କତ ଆସ୍ତୃତ
ଧରଣୀର ବିସ୍ତୃତ ଗରଭେ,

ବଂଧୁର ସରଣୀ ମେଲିଛି ଆମର ମିଳନେ ପରି
ସତ୍ୟ ଶିବ ସୁନ୍ଦରର ଅପୂର୍ବ ପସରି
ସ୍ନିଗ୍ଧ ବନ୍ଧୁରି ।
ଆସ ପ୍ରିୟ, ଆସ ଯିବା କଟିଭ କର ଛନ୍ଦ
ପ୍ରେମ ବୀଥି ଅଭ୍ୟନ୍ତରେ ।
ଏଇ ଶୁଣ-
ଅନନ୍ତ ଦୂରରେ
କୋକିଳ ଚଳଇ ମତ୍ତେ ପଞ୍ଚମ କୂଜନେ
ଢାଳି ସୁଧା ପ୍ରାଣେ ପ୍ରାଣେ ବିଜନ ବିପିନେ;
ଦ୍ରାକ୍ଷା-କୁଞ୍ଜ ଦୋଳି-
ତହିଁ ଝୁଲି ଝୁଲି
ଯାପିବା ଜୀବନ, ଯୌବନେ ।
ଭୁଲିଯାଅ ବାସ୍ତବର ବୁକୁଫଟା ବାଧା;
ଭୁଲିଯାଅ ତୁମ ଆଦ୍ୟ ଜୀବନର କ୍ଷୁଧା ।
ଆସ,
ଫେରିବୁହଁ ,
ଡାକେ ତମ ହୃଦୟାକାଶର
ଦ୍ୱିତୀୟା ଯାମିନୀ ଜହ୍ନ
ଫେରିବୁହିଁ ଡାକ ଥରେ ତାକୁ 'ଆଗୋ ମୋର ପ୍ରିୟା'
ବଞ୍ଚିଅଛି ବର୍ଷ ମାସ-ଅସୀମ କାମନା-
ତୁମ ପାଇଁ ମୁକୁଳିତ ତା'ର ହୃଦୟ-ମନ୍ଦିର
ଶୂନ୍ୟ ସିଂହାସନ
କର ରୂପାୟନ
ହେ ଦେବତା !
ଦେଖ, ପ୍ରଣୟ ସମ୍ଭାର ବିନା
ବ୍ୟର୍ଥ ତା ଜୀବନ ସିନା !
ମେଣ୍ଟାଇବ ନାହିଁ ତା'ପିପାସା ?
ବଞ୍ଚନାର ବିପୁଳ ତାଡ଼ନେ
ସବୁଯିବ ଅପସରି ?

ହେ ନବୀନା !
ଆସ ସଖା, ଆସ ମୋର ଆଶାପୁରୀ ଉରସେ;
ଆସ ସଖା, ଯୌବନ ମୋର ବସନ୍ତ ସରସେ;
ଏଇ ଦେଖ ପ୍ରିୟତମ-
ମସୃଣ ସୈକତେ ଜ୍ୟୋତ୍ସ୍ନା କରେ ବିଚରଣ ।
ପ୍ରେମର ସାଗରେ ପ୍ରେମ ତରଣୀ ଭସାଇ
ପ୍ରେମର ଅୟନେ ଯିବା ଊର୍ଦ୍ଧ ପଥ ବାହି ।
ଚନ୍ଦ୍ରାଲୋକେ
ରଜତ କିରଣ ସ୍ନାତ
ମଳୟ ସମୀର
ଅଳକ-ଗଣ୍ଡ-ଫଳକେ ଦେବ ସେ ଚୁମ୍ବନ,
ନବ ଶିହରଣ ।
ତେବେ
ଭୁଲିଯିବ ଆପେ ଆପେ
ଜୀବନର ଅଜ୍ଞାତ ଅଶ୍ରୁଳାନୁଭୂତି ।
ହେବ ପରସ୍ପର ଜୀବନ ମିଳନ,
ବାହୁ ଆଲିଙ୍ଗନ-
ଯେମନ୍ତେ ବିଦ୍ୟୁଲ୍ଲତା ଘନ-
ସେତ ମୋର ଅନ୍ତରର ନମ୍ର ନିବେଦନ ।

---

## ଭୁଲି କି ପାରିବି ?

ଜୀବନର କରୁଣ କାହାଣୀ
ଭୁଲିପାରେନାହିଁ ପ୍ରିୟେ ;
ସେତ ମୋର ଚିରକାଳ ଧନମଣି ।
ପ୍ରଥମାର ସେ ଯେ ଉଚ୍ଛ୍ୱସିତ
ହୃଦୟ ପୂରିତ-
ବକ୍ଷ ଚିରି ଦେଖ ମୋର,
ଅଙ୍କିତ ପ୍ରଣୟ ତା'ର
ଲୋମେ ଲୋମେ ରକ୍ତେ ରକ୍ତେ;
ଫୁଟି ପଡ଼େ ଯେଉଁଠି ପ୍ରସ୍ରବଣ ଧାର ।
ସେତ ମୋର ଯୌବନର କନକ ବିଭୂତି;
କେମନ୍ତେ
ତା'ର ସ୍ମୃତି-ସଙ୍ଗେ
ଦେବି ଏହି ହାତେ ପୂର୍ଣ୍ଣାହୁତି ?

ଭୁଲି ପାରେ କେବେ ସଖି ପ୍ରଥମାର ପ୍ରୀତି ?
ଏହି ହାତ ଧନ୍ୟ ହେଲା
ଯା'ର ସୀମନ୍ତେ କୁଙ୍କୁମର ଗାର ଟାଣି,
ଏଇହାତ ସିକ୍ତ ହେଲା
ଯା'ର ହୃଦେ ମଙ୍ଗଳର ପ୍ରଣୟ ସୂତ୍ର ଗୁଣି,
ଏହି ଅଙ୍ଗେ
ଉପାୟନ ଯା'ର ଅଛି ଅନୁଭବ-
କେମନ୍ତ ତା'କୁ ଭୁଲିବ ?
ସ୍ମୃତି-କୁଣ୍ଡେ ଦେବ ଢାଳି ମୋର ଏ ଜୀବନ ।
ପ୍ରାଣେ ଯା'ର ଅନ୍ଧାରର ଘନ ଆସ୍ତରଣ,
ଅଙ୍ଗେ ଯା'ର ବେଦନାର କଣ୍ଟକ ତାଡ଼ନ-
ଶେଷ ଅଭିଳାଷ ତା'ର ଆତ୍ମ ନିରସନ ।
ପକ୍ଷହରା ପକ୍ଷୀ ସମ ଆକୁଳେ ଏକାକୀ
ଦେହର ଶୋଣିତ ଆଙ୍କେ
ମୃତ୍ୟୁର ଛାୟାମୟୀ ମୂର୍ତ୍ତି;
ଅଜାଣତେ ତୂଳୀରୁ ପଡ଼ଇ ଝରି
ସ୍ନେହ ବିନ୍ଦୁ
ନିର୍ଝରିଣୀ ବକ୍ଷେ;
ଚାଲିଇ ସେ ଗାଇ ମୋର ଗୁରୁ ବ୍ୟଥା ଗୀତି
ବିଶ୍ୱ ମୁଖେ ମୁଖେ ।
ପ୍ରକୃତିର ଏ ଯେ ଶାଶ୍ୱତ ବିଷମ ସମ୍ଭାର-
ସହକାର ବୁକେ ମାଧବୀର,
କୁସୁମ କପୋଳେ ମଧୁପର,
ସବୁ ମାୟା ସବୁ ହୃଦର-
ମରଣ ଅନିବାର ।

ଶରାହତ ମୃଗ ସମ ପାଏ ନିର୍ଯାତନା
ଅନ୍ତିମ ବିଦାୟ ସ୍ୱର
ଧରଣୀର ବକ୍ଷେ ପିଠେ
ଅବୟବ ମୋର;
ହୃତ୍‌ପିଣ୍ଡ ଫାଟେ,
କଳିଜା ତଳୁ ରକ୍ତ ଛୁଟେ,
ମୃତ ଦେହ ଜଳିଯାଏ ବେଦନା ଇଂଧନେ !

---

## ଅବ୍ୟକ୍ତ ବେଦନା

କ୍ଷୁଦ୍ର ଏ ଜୀବନେ ହେଲା କେତେ ଅନୁଭବ,
ବିଚିତ୍ର ଏ ଚରାଚର ନିତ୍ୟ ଅଭିନବ;
କହେ କେହୁ ନିର୍ଜୀବ ଏ ଶୁଷ୍କ ଅଶ୍ରୁବୁନ୍ଦ,
ନୀରସ ଓ କ୍ଳାନ୍ତଭ୍ରାନ୍ତ ଅର୍ଥହୀନ ମୂକ;

ସ୍ପନ୍ଦନହୀନ ଜୀବନେ କିବା କହ ଲାଭ ?
ବ୍ୟଥିତ ଚରଣ ନେଇ ମୃତ୍ୟୁ କୋଳେ ଠାବ !
କଣ୍ଠୁ ଭର୍ତ୍ସନା ଚାଞ୍ଚଲ୍ୟ ସବ୍ବ ବାର ପାଇଁ,
ନିର୍ମମ ହୃଦୟୁ ମୋର ଅଛି ମୁକୁଳାଇ ।

ଯେ ଯେତେ ବୋଲନ୍ତୁ ପଛେ ଭୁଲି ସ୍ନେହ-କଥା
ଟେକିଦେବ କାହୁଁ କହ ଚିର ନତ ମଥା ?
ନିର୍ଜୀବ ·ସେ ନିସ୍ପନ୍ଦ ସେ, ପଉଷ-ପଥର-
ନୁହେ ସେ ରସିକ କବି, ନୁହେ କଳାକାର;

କାବ୍ୟ, ଛନ୍ଦ ନୁହେ ତାର ଜୀବନ ବେଭାର-
ବ୍ୟଥା ମଧ୍ୟେ ହଜାଏ ଯେ ଚିରନ୍ତ ସଂଭାର ।
ରୂପ-ରସେ ଭୁଲି ରହେ ଶିଳ୍ପୀ ନିରବଧି,
ସ୍ନେହ ସ୍ୱରୂପକୁ ସିନା ଅକାତରେ ବଧି ।

ପ୍ରୀତିପାଇଁ ମୂକ ଯାହା ଅଛି ଅନୁଭବ,
ନୟନ କୋଣେ ଅଶ୍ରୁଠେ ହିନା ତାର ଛବି ।
ବୁକୁ ଭେଦି ଝରେ ଉଠେ ବିଷାଦ କାହାଣୀ,
ପୃଥିବୀର ଶ୍ରେଷ୍ଠ କାବ୍ୟ ନ ପାରବ ଜାଣି ।

ସବୁ ସିନା ଅଟେ ତୁଚ୍ଛ ବିଳାସ ବନ୍ଦନା-
କେ ବୁଝଇ ମରମର ଅକୁହା ବେଦନା ?
କେ ଦେଖଇ ବୈଚିତ୍ର୍ୟର ଅପୂର୍ବ ସଂଭାର ?
ନଭ ବକ୍ଷେ ତାରା ଖସେ ଟାଣି ସ୍ୱର୍ଣ୍ଣଗାର-

କେ ଦେଖଇ ସ୍ଥିତପ୍ରାଜ୍ଞ ଦୂର-ଦୃଷ୍ଟି ସଙ୍ଗେ,
ଅସଂଖ୍ୟ ତାରକା ନଭେ ଲେଖିଚି ଯେ ରଙ୍ଗେ ?
ସବୁ ଭାଷା, ସବୁ ଆଶା, ବିଫଳ ପ୍ରୟାସ-
ସିନ୍ଧୁ-ଗମ୍ଭୀରତା ଉର୍ମୀ କରେ କି ପ୍ରକାଶ ?

ଅସରନ୍ତ ମଧୁପୂର୍ଣ୍ଣ ପ୍ରୀତି-ଫଲ୍‌ଗୁ-ବୀଚି
ମରୁ ବୁକେ ନିରଶରେ ବିଲୟ ଭଜନ୍ତି ।
ହଜଇ ଗଗନ-ପଟେ କ୍ଷୁଦ୍ର ନୀହାରିକା-
ନଫୁଟି ମଉଳି ଯାଏ ବ୍ୟଥିତ କଳିକା ।

କଏ କହ ପ୍ରାଣ-ପୋତ ଘୋର ଅକୂପାରେ,
ବାହିନେବ ବହୁ ଦୂରେ ଅନଂତ ସେ ପାରେ;
ସେ ସିନା ଅମର-ସାଥି ବିହୀନ ଜୀବନେ,
ଯେ ଜାଳିଛି ପ୍ରୀତି-ଦୀପ ବିରହ-ଇନ୍ଧନେ ।

ତମକୁ ସେ କପାଁ କହୁ ଥିବ ଆତ୍ମ-ଜନ
ବଖାଣିବ ହୃଦ ବାର୍ତ୍ତା ମୌନ ସଂଗୋପନ ?

ନିଃସ୍ୱ, ଦୀନ, ହୀନ ସେହୁ ନିଃସଂଗ ଉଦ୍‌ଭ୍ରାନ୍ତ-
ମୂକ, କ୍ଳାନ୍ତ, ଜଡ଼ ସେହୁ ପଥଭ୍ରଷ୍ଟ ପାନ୍ଥ ।

ଯା ହସିଲ ହସୁ ପଛେ ସହି ନେବ ଦାଉ,
ଯା ରହିଲ ରହୁ ପଛେ ନ କହିବ ଆଉ ।

ମରମେ ମରମେ ବାଜି-ଅଛି ଯେଉଁ ବାଣୀ,
ତାହା ସିନା ତା’ ପ୍ରାଣର ଅମୂଲ୍ୟ କାହାଣୀ ।

## ଚାଲ ମିଳନ ଅନ୍ୱେଷଣେ

ଭାସିଗଲା କେତେ ଗଗନମେଳେ
ସନ୍ଧ୍ୟା ମୁଖର ପକ୍ଷ ଝଡ଼
ଆଉ ନାହିଁ ଆଜ ଚପଳ ମୁଖେ
କମଳ-ରାଣୀର ନୟନ ଠାର ।

ଶ୍ରାନ୍ତା ପଥେ ପଡେ ହଜିଲା ତାର
ହୁଡ଼ିଗଲୁ ଆହା ଶ୍ୟାମଳବାଟ,
ଭାଙ୍ଗିଗଲା ତୋର ହେ ମେରୁଦଣ୍ଡ
କେମନ ଚଢ଼ିବୁ ଏ ଗିରିଘାଟ ?

ପଦେ ପଦେ ଆଉ କିଏ ସେ ଦେବ
କୋମଳ ବଚନେ ସହାନୁଭୂତି,
ସମ୍ବଳ ତୋର କାହିଁରେ ଯାତ୍ରୀ
କେମନ କାଟିବୁ ଦୀର୍ଘ ରାତି ?

ପ୍ରଦୀପ ଯେ ଅଛୁ ଅକଂପିତେ
ଅନ୍ଧାରେ ଯଦ୍ୱ ଦିଏ ଆଲୋକ
ନାହିଁ ତେବେ ଭୟ ଏଇ ଜନମେ
ଚଲ ଯାପେ ଢାଳି ଧୃତ-ଲୋତକ ।

ନାଉର ହେ ଆଜ ବଜପୁ ନାଦେ
ବଜାଇ ଶୁଭଗ ତୂର୍ଯ୍ୟ ଆମୋଦେ
କଣ୍ଠା ଫୁଟାଇ ତରୁଣ ପାଦେ
ଚଲ ମିଳନକୁ ଧାଳି ହେ
ଥକି ଯାଇଥିବା ତରଣୀ ତୋର
ଶୀଘ୍ର ଗତିରେ ଚଲ ହେ ।

---

# ଶେଷ ଅଭିଳାଷ

ଜୀବନ-ଜଳଧି-ସଂସିକ୍ତ-ପୁଳିନେ
ନଇଁ ଆସେ ଇନ୍ଦୁ ,
ବୁକୁ ତଳୁ ନାହିଁ ଝରେ ଯୌବନର
ସ୍ନିଗ୍ଧ ଜୋହ୍ନାବିନ୍ଦୁ ।

ଅଂଧକାର ଟାଣି ଆଣେ ଜୀବନର
ଶେଷ ଯବନିକା ,
ଜଳଯାଏ ଆପେ ଆପେ ଦେଢେସବୁ
ପ୍ରୀତି ଅହମିକା ।

ନିର୍ମମ ସଂସାର ନିଷ୍କରୁଣ ଘାତ
କଣ୍ଟା ଫୁଟେ ପାଦେ ,
ବିରହ-ଲହରୀ ମାଳା ଛିଟେ ଖାରେ
ମସ୍ତକ ବିଷାଦେ ।

ଛନ୍ଦହୀନ ଗୀତେ ମହୋଦଧି କରେ
ବିକଳ କ୍ରନ୍ଦନ,
ମୃତ୍ୟୁ ଦେବତାର ଆବାହନ ପାଇଁ
କିବା ସେ ବନ୍ଦନ ।
ବକ୍ଷ ତଳେ ଫୁଟିଉଠେ ପ୍ରଧୂମିତ
ବଡ଼ବାଗ୍ନି ଶିଖା,
ତେଜନ୍ତି ମମତା ସର୍ବହରା ସେତ
ତା'ର ବିଧି-ଲେଖା ।
ଝଡ଼, ଝଞ୍ଜା, ବାତ୍ୟା, ପ୍ରଚଣ୍ଡ ପ୍ରଳୟ
ଲମ୍ଫଙ୍କର ଲମ୍ଫେ,
କଲିଜା ତନ୍ତୁ ନିଗାଡ଼େ ରକ୍ତଧାର,
ଜୀର୍ଣ୍ଣ ତନୁ କମ୍ପେ ।
ଜଳିଯାଏ ଓଠ ତନ୍ତୁ ଯେତେସବୁ
କଳ୍ପନା-କଲ୍ଲୋଳ,
ଫୁଟିଯାଏ ଫେନ ଫେନ ଝର ଝର
ଗରଳ - ହିଲ୍ଲୋଳ ।
ଜରା ଆସେ, ଶ୍ରେୟ ଆଜ ସେତିକି ହିଁ
ସୁଖର ବିଳାସ,
ନିଃସ୍ୱ ଏ ଜୀବନେ ତା'ର ମରଣ ହିଁ
ଶେଷ ଅଭିଳାଷ !

---

# ପଶ୍ଚିମ ପଥେ

ଶୈଳ ମାଳ ନଭସେ ,
ରକ୍ତ ରଶ୍ମି ରଭସେ ,
ନଇଁ ଆସେ ଶୋଭା ଶିଖ ତରୁଣୀ ,
ଶ୍ରାନ୍ତ ବନ ଗହ୍ୱନ ,
କ୍ଲାନ୍ତ - କଣ୍ଠ - କୋକିଳ
ଆଳାପିଲା ଥରେ ଶେଷ ରାଗିଣୀ ।

ଅଳି କୁଳ ଗୁଞ୍ଜନ ;
ଶିଞ୍ଜିମାର ଶିଞ୍ଜନ
ଭଜିଲା ଶିଥିଳ ଛନ୍ଦ ଚରଣେ ,
ଇନ୍ଦୀବର ନୟନ
ଲଭି ଶେଷ ସ୍ପନ୍ଦନ
ନିମୀଳିତ ହେଲା ତାମସ ସ୍ପଣେ ।

ଘାଲ ପଠ ମିନ୍ବର ,
ଜୟ ବନ୍ଧୁ ସିନ୍ଧୁର
ପଶ୍ଚିମ ଆକାଶେ ହେଲ ବିଲୀନ,

ବିଧୂରିତ ରଥାଙ୍ଗ
ଚେଢି ପ୍ରେୟସୀ ସଙ୍ଗ
ଆର୍ତ୍ତିକଣ୍ଠେ କମ୍ପାଇଲା ପୁଳିନ ।

ପ୍ରେମାରୁଣ - ପ୍ରଦୀପ
ହେଲ ଧୀରେ ନିର୍ବାପ
ଅନ୍ଧକାର ପଣତର ଆଘାତେ ,

ଅନ୍ଧକାର ଅୟନେ
ଶୁଷ୍କ ମ୍ଲାନ ବଦନେ
ଅସ୍ତାଚଳ ଲୁକ୍କାୟିତ ଦିବାନ୍ତେ ।

---

## ପଥ ଆଉ ରୋଧନା

ଆଖି ତଳେ ତଳେ ଆଜ
ଅଶ୍ରୁର ସପ୍ନ ;
ବନ୍ଧୁହେ ରୋଧ କାହିଁ
ବିରହୀର ଅପ୍ନ ?
ଗୋଧୂଳି ଜୀବନେ ତାର
ନାହିଁ ମଧୁ ଅଭିସାର,
ଲୋଡ଼େ ନାହିଁ ଭ୍ରମର ଏ ବନ୍ଧନ,
ବନ୍ଧୁହେ ରୋଧ କାହିଁ
ବିରହୀର ଅପ୍ନ ?
ଅଛି ପର ତରୁଣର
କଣ୍ଠଳଗ୍ନ ନରମ
ହାତ ମାରି ଦେଖ ସଖି
ଏଯେ ତା'ର ମରମ;

ଅଛୁ ପଣ୍ଡ ପରିମଳ ,
ଭୃଙ୍ଗର ମଧୁ କଳ ,
ପୀରିତିର ସମ୍ଭାର ସରମ ,
ହାତ ମାରି ଦେଖ ସଖି
ଏ ଯେ ତା'ର ମରମ ।

କପୋତର ବୁକୁ ତଳେ
ଛୁଆଟିଏ ଅରପି
କପୋଣି ଯେ ଗଲା ଉଡ଼ି
ଅସୀମରେ ଜଳପି ;
ନବଜ୍ଞ ନସଙ୍ଗା ଭରି
ମାଡ଼ି ତା' ଉଠଇ ଥରି
ଶିଶୁ ଡ଼ାକେ ମାତୃକୁ ବଳପି ,
ବନ୍ଧୁ ହେ ଦେଖ ଆଜି
ଦୁର୍ଦ୍ଦଶା ଭୋଗେକି ।

କପୋଣି ଯେ ଗଲା ଉଡ଼ି
ଅସୀମର ଅଙ୍ଗନେ ,
ଚଉଦିଗ ହାହାକାର
ଗିରୀଷମ ଜୀବନେ ;
ଶୂନ୍ୟ ଏ ଯଉବନ
ଶୂନ୍ୟ ଏ ତନୁ ମନ
ଶୂନ୍ୟ ଲାଗଇ ଏଇ ଭୁବନେ,
ଚଉଦିଗ ହାହାକାର
ଗିରୀଷମ ଜୀବନେ ।

ବିହଗ ଆକୁଳ ରବେ
ବ୍ୟଥିତ ଏ ସରଣୀ ,
ତୃଷିତା ଲଭିବ କା'
ନିଶ୍ୱାସେ ଧରଣୀ ?

ମୂର୍ଚ୍ଛିତ ପ୍ରକୃତି,
ଶୁଷ୍କ କଠୋର ବୃତ୍ତି
ଗାଏ ବିଦାୟର ଶେଷ ରାଗିଣୀ,
ତୃଷିତା ଲଭିବ କା'
ନିଶ୍ୱାସେ ଧରଣୀ ?
ଖୋଲ ଖୋଲ ଖୋଲ ସଖି ,
ପଥ ଆଜ ରୋଧନା,
ତମ ହୃଦେ ଏ କାହାଣୀ
ଦେଇଛୁ ଗୋ ଯାତନା;
ବସୁଧ ଅତି କୋମଳ -
ଶୋକ ଶୁଣିବାର କାଳ;
ଆସିନାହିଁ ତୁମ ପ୍ରାଣେ ନବୀନା ,
ଖୋଲ ଖୋଲ ଖୋଲ ସଖି ,
ପଥ ଆଜ ରୋଧନା ।
ପଥେ ପଥେ ଅଙ୍ଗ ପେତ
ଲୋତକର ତାଡ଼ନା -
ସ୍ନେହ ପାଇଁ ଏଇ ତା'ର
ସୁଦୃଢ଼ ସାଧନା ;
କଣ୍ଟକ ପଦେ ପଦେ
ଫୁଟି ଉଠୁ ପରମାଦେ;
ବୁକୁ ଝରୁ କାରୁଣ୍ୟ ଝରଣା,
ପ୍ରୀତି ଅନୁରାଗୀର ଏ
ସୁଦୃଢ଼ ସାଧନା ।
ଯାଅ ସଖି ଦୋହଲାଇ
ଯଉବନ-କେତନ ,
ଅପର ଦୁଆରେ ମାଗ
ମଳୟର ପବନ ;
ଫୁଟିବ କୁସୁମ-କଳି ,
ବାସ ଉଠିବ ଉଛୁଳି,
ଅନ୍ୟ କୁଟୀର ଗାଉ ତୁମ ଶୁଭାଗମନ,
ଦୁର୍ଭଗା ପଥିକର
କଲ୍ୟାଣ ଏ ବେଦନ ।

## ସୃଜନ ରହସ୍ୟ

ଯେଦିନୁ ତୁମ ସଙ୍ଗ ଘଟିଲା ବିଚ୍ଛେଦ,
ସେଦିନୁ ପାପ-ବହ୍ନି ଗ୍ରାସିଛି ଅପଘନ;
ଯେତେ ଯେ ଅପରାଧ କରଇ ନିତି ନିତି
କ୍ଷମିବ କିଏ ଆଜି ଜୀବନ ହେ ଜୀବନ ?

ସୁଦୂର ମରୁପଥେ ଗୁଞ୍ଜି ଯେ ଗଲ ମୋତେ,
ଗୋଧୂଳି ଛଳେ ଲେଖି ଜୀବନ ପ୍ରତିଲିପି;
ସେ ନୁହେଁ ଉଦୟନ, ଅସ୍ତ୍ର ସିନା ମୋର-
ଆଜି ମୁଁ ମୁଦ୍ରଣ କରୁଛି ଟିପି ଟିପି ।

ବିଦାୟ ବେଳେ ଥରେ ଛୁହିଁ ମୋ ନତ ମୁଖ,
ଅଶ୍ରୁ ପୋଛି ଧୀରେ ଦେଲ ଯେ ଅଞ୍ଚଳ;
ବିଯୋଗେ ସେ ମିଳନ, ମିଳନେ ସେ ବିଯୋଗ,
ଦୀର୍ଘ ପଥେ ମଧୁ-ସ୍ମୃତି, ସମ୍ବଳ ।

ଯା' ଦେଲ ଓଠ ପୁଟେ, ଯତନେ ସାଇତିଛି,
ତେଣୁ ଏ ଧରା ହେଲା ଜୀବନ ଅଭିସାର;
ଯାହାଙ୍କୁ ଦେଖେ ନିତି, ତା' ବୁକେ ଢାଳେ ପ୍ରୀତି,
ସକଳ ମଧ୍ୟେ ଗୋ ମୁଁ ତୁମ କଳାକାର ।

ସୃଜନ ଅଙ୍କିତେ ଶୟନ କୋଣେ ବାଜେ
ତୁମର ଅମୃତ କନକ କିଙ୍କିଣୀ;
ଏତେ ଯେ ଝଙ୍କୃତ ମଧୁର ସଙ୍ଗୀତ-
କା'ହାଁ ଆହ୍ୱାନ ବୁଝି ମୁଁ ନପାରେକ ?

ଏ ମୋର ଆତ୍ମା ଯେ ଲଗିଛି ତୁମ ସ୍ନେହେ
ସାଗରେ ବିସ୍ତୃତ ଲହରୀ ଲୀଳା ସମ;
ଲହରୀ ଚୂଡ଼େ ଝରେ ଯେବଣ ଚନ୍ଦ୍ରିକା-
ସେ ତୁମ କରଲିପି ସତ୍ୟ ଅନୁପମ ।

ପବନେ ଯେତେ ହଜେ କ୍ଷୀଣ ଆଲୋକ ରେଖା-
ପବନ ଗାଏ ତାର ସ୍ମରଣ ସଙ୍ଗୀତ;
ନିରାଶା ପଥେ ଫୁଟୁ ଆଶାର ପୂତ କଳି-
ସେ ସିନା ସୃଷ୍ଟିର ଗୋପନ ଇଙ୍ଗିତ ।

## ବସନ୍ତ - ବିରହୀ

ସାରା ଧରା ବକ୍ଷେ          ବହୁଛି ଗୋ ଆଜି
    ଉଚ୍ଛଳ-ସୁବାସ-ମଳୟ-ପବନ;
ସ୍ତୁଭ ତଳେ ମୋର          ଗୁପତ ବେଦନା-
    କୋହ କଣ୍ଠୁ ଉଠୁଛି ଗୋ ଘନଘନ ।

ନବ ସହକାର          ସ୍ନିଗ୍ଧ କଣ୍ଟକରୁ
    ବଦାର ବଉଳ ମାରୁଛି ଗୋ ଉଙ୍କି;
ପାଷାଣେ ପାଷାଣେ          ମର୍ମରୁଛି ସୁଧା
    ପଲ୍ଲବେ ପଲ୍ଲବେ ମଧୁ ଦେଇ ଆଙ୍କି ।

ଅନଳ-କମ୍ପିତ-          ବୃନ୍ତ-କଣ୍ଟକରୁ
    ମଧୁ-ଭର-ବୃନ୍ତ-ଲମ୍ବିତ-ଗୋଲାପ
ତୋଳି କା'ର ଗଳେ          ସଜାଡ଼ି ଦେବଗୋ ?
    ଜାଳିଛ ତ ମୋର ବୁକେ ଶେଷ ଦୀପ ।

ମଲ୍ଲୀ-ବଲ୍ଲୀ କୋଳେ ସୁବାସ କୁସୁମ
ଛୁଟିଯାଏ ପୁଣି ବ୍ୟର୍ଥଭାରେ ଫୁଟି,
କେଉଁ ପ୍ରେୟସୀ ଗୁନ୍ଥି କାହାର ଗଳାରେ
ଗଳାଇବ ପ୍ରିୟେ ଚିତ୍ତ ଯାଏ ଫାଟି ।

ନବ ପଲ୍ଲବିତ ଚୂତ ଡାଳେ ବସି
କୁହୁ କୁହୁ ତାନେ ଆଳାପେ କୋକିଳ
କେ ଆଜି ଗାଇବ ପିକ-ତାନ ଧରି
ମୋର ବୀଣା ତନ୍ତ୍ରେ ଫୁଟାଇ ମଞ୍ଜୁଳ ?

ଫୁଟିଲ ମନ୍ଦାର ମଧୁପ ଗୁଞ୍ଜନେ,
ନାହିଁ ଯେ ତୁମର ପ୍ରବାଳ ଅଧର;
କା'ର ଓଷ୍ଠ ତଳେ ଆଙ୍କିବ ଚୁମ୍ବନ
ପିଇ ଉତ୍ତରଳ-ଉତ୍ପଳ-ମଦିର ?

କାହାର ଚିକୁରେ ଲମ୍ବାଇ ଦେବଗୋ
କବରୀ କେତକୀ ପଦ୍ମବଲ୍ଲୀ ଆଜି ?
ପଲ୍ଲବେ ପଲ୍ଲବେ ସୁଗନ୍ଧ କୁଙ୍କୁମ
ଝରିପଡ଼େ ଏବେ ପାରନ୍ତୁକି ତେଜି ?

ମରୁବୁକେ ଆଜି ବାନ୍ଧିଲ ଧରଣୀ
ଶ୍ୟାମଳତା-ଭେଳା ସ୍ନିଗ୍ଧ ଜ୍ୟୋତ୍ସ୍ନା ସଖା;
ମୋର ହୃଦେ କିନ୍ତୁ ଜଳି ଉଠୁଛି ଗୋ
ସ୍ମୃତି-ଦାବାନଳ ଲେଲିହାନ ଶିଖା ।

କେତେ ଯେ ମୋହର କଳ୍ପନା ଜଳ୍ପନା,
ବନମଲ୍ଲୀ ସମ ହେଲ ପରିଣାମ;
ବନ-ବହ୍ନି ସିନା ଜଗତ ଜାଣଇ,
କେ କରେ ମାନସ ବ୍ୟଥା ଉପଶମ ?

ସ୍ମୃତିଶୀପ୍ରୁ ମଧୁ- କାଳ ଚଖାଇଲେ
ନିଖିଳ ବିଶ୍ୱର ଅମୀର ଫକୀର ;
ଆଜି ପ୍ରିୟେ ତୁମ ବିହୁନେ ଶୂନ୍ୟ ମୋ
ବ୍ୟଥା-କବଳିତ-ବିଧୁର-କୁଟୀର ।

ଶାନ୍ତ ବୁକୁ ତଳ ବୁଣି ଦେଲ ଆଜି
ଖେଦ-ବୀଜ ହୃଦେ ଯୌବନ-ବେଦନା;
ଚହଲିଲ କେତେ ପୀରତି-ଖେଳନା,
ହାୟରେ ବିଧାତା ଏକି ବିଡ଼ମ୍ବନା !

---

## ଶେଷ ଭିକ୍ଷା

ଯଦି ଏ ମୂଢ଼ ଭ୍ରମର ପାଦେ କରିଛି ଅପରାଧ,
କ୍ଷମିବ ନାହିଁ କି ମୋ ଦେବତା, ନେବକି ପ୍ରତିଶୋଧ ?
ଟୋପାଏ ତୁମ ଶୋଣିତ ଦେଇ ଥାପିଲ ମୋର ତନୁ;
ଜୀବନ ଭରି ବଢ଼ାଇ ଦେଲ ଜଗତେ ଦିନୁ ଦିନୁ ।

ଦେଖାଇ ଦେଲ ନୟନ ଆଗେ ରୁରୁ ଶ୍ୟାମଳ ଧରା,
ଚଖାଇ ମାୟା-ମଦିରା କଲ ଆତ୍ମହରା ପରା ।
ଧନ୍ୟ ତୁମ ସୃଷ୍ଟି ପ୍ରଭୁ ଧନ୍ୟ ତୁମ ଲୀଳା—
ମୋର ଏ ଦେହ ଦହନ ବେଳେ ଲଗିଛି ତମ ଖେଳା ।

ଜୀବନ ଯଦି ଦୁଃଖମୟ ବିଷମ ଅଭିଶାପ —
ମାନସେ କପାଁ ତରୁଣୀ-କବି ଆଙ୍କେ ପ୍ରୀତି ରୂପ ?
କଜଳ ବୋଳି ନେନେ ଦେଲା କିଏ ବା ତୂଳି ଧରି ?
ହୃଦୟ-ପଟେ ସେନେହ ରଚି ନୟନ କୋଣେ ଠାରି ?

ଚଳାରେ ଶୁଣୁଁ ତାକୁଇ ଭକ୍ତ ମାଗଇ ହାତ ପାତି,
ହୃଦୟେ ମୋର ଭାବନା ଭରି ପୂର୍ଣ୍ଣ କଲ ଗ୍ରନ୍ଥି ।
ହସାଇ ଦିଅ, ଖେଳାଇ ଦିଅ ରୁଷାଇ ଦିଅ କ୍ଷଣେ--
କିଏ ସେ ତୁମେ ଅଛ ହେ ଲୁଚି ଦେଖାଦିଅ ଏ ପ୍ରାଣେ ।

ପଥରେ ଯେଉଁ ଯାତନା ଭୋଗେ ଜାଣନା କିବା ତୁମ୍ଭେ ?
ଆତୁର ମୋର ଝରଇ ଲୁହ ପାଇବ କିଏ କିମ୍ଭେ ?
ଜୀବନ ସାରା ଖେଦ-ଅନଳେ ଜଳୁଛି ଯେବେ ମୋର
ହସୁଛ ପ୍ରଭୁ ଅଟ୍ଟହାସେ, ନପୋଛୁ ନେତ୍ର ନୀର !

ତଥାପି ତୁମେ ମୋହର ସାଥୀ, ତୁମେ ମୋହର ସଖା –
ତୁମରି ପାଦେ ଦଗ୍ଧ ପ୍ରାଣ ଅପାର ସୁଖ ଲଭ୍ୟ !
ଜୀବନେ ଯେତେ ଅବମାନନା ସହୁଛି ଲୁହ ଢାଳି –
ସେଇ ଲୋତକ ତୁମରି ପାଦ ଧୋଇ ତୁମକୁ ଭାଳି ।

ଏତିକି ସିନା ଚରଣ ତଳେ ଦାନ ମିନତି ମୋର –
ନେଇଣ ନିଅ ପ୍ରଭୁ ଯେଣେ ହେ ମୋର ଭକ୍ତି ନମସ୍କାର ।

---

# କଂପନ

ଅସହାୟ ଶିଶୁ ମୁଖେ ନ ଫୁଟଇ ଭାଷା,
ମର୍ମେ ତାର ମର୍ମରଇ କେବା ସୁଖ ଆଶା ?

ସରଳ ବ୍ରହ୍ମାଣୀ ତଳେ ତରଳଇ ଝର,
କେଉଁ ସ୍ୱପ୍ନ ଅନ୍ୱେଷଣେ ନିରତ କାତର ?

କଣ୍ଠ ତଟେ ସ୍ଫୁରି ଆସେ କେବା ସେ କାହାଣୀ ?
ଆଶାୟୀ ହୃଦୟ ଲୋଡ଼େ କେଉଁ ସ୍ନେହବାଣୀ ?

ଗ୍ରୀଷ୍ମ ଝଞ୍ଜା ବହିଯାଏ ଥରଇ ମରମ,
ମରୁ ବୁକେ କ୍ଷୀଣ ଝର ମରଇ ଯେସନ ।

ସବୁ ଦିଶେ ହାହାକାର କ୍ଷଣିକ କଂପନେ
ଚପଳା ଚମକ ଭ୍ରାନ୍ତ ସୃଷ୍ଟିର ସପନେ ।

ଅଧରେ ଫୁଟଇ ଦର ସ୍ଫୁଟ ମିଷ୍ଟକଥା,
ହସାଇଛ ସ୍ୱଜନର ଆଦର ମମତା ।

ସୃଷ୍ଟିର ବଚନ ଛନ୍ଦେ ହଜାଇଣ ସତ୍ତ୍ୱ
ମୁଗ୍ଧ ଶିଶୁ ରହେ ଚୁହିଁ ନ ପକାଇ ପତା ।

ସକଳେ ଏ ପରିବାରେ ପ୍ରୀତି-ବାରି ଢାଳି
ସୋହାଗେ ତାକୁ କୋଳକୁ ନଅନ୍ତି ଘୋଟାଳି ।

ତଥାପି ଉଠଇ ଥରି ଦଦରା ଏ ନାଆ
ଶିଶୁ ମୋର ଡାକେ ଯେବେ ସ୍ନେହକଣ୍ଠେ 'ମାଆଁ' ।

---

## ବିଦାୟ ବିଳାପ

'ସୁଦୂରେ ଯାଉଛ ପ୍ରିୟ;
'ସମୟ ତ ଆସି ହେଲାଣି ଅଗତ;
ଶେଷ ହେଲା ପରିଚୟ —
ଅନ୍ତ୍ୟ ବିଦାୟ ଦିଅ ।

ତପନ ଯେବେ ଗୋ ବୁଡ଼ିବ ସଧୀରେ
ପଶ୍ଚିମ - ପଥ ଛୁଇଁ;
ମନ୍ଦ ମଳୟ କୁସୁମ ଗଂଧେ
କ୍ଷୁଧାରେ ପଡ଼ିବ ନଇଁ;

କାନ୍ତ କରଣେ ଅବନ୍ମ ହସିବ
କୁଙ୍କୁମାଧର ମାଜି;
ବିଶ୍ୱ-ବୀଣାର ତନ୍ତ୍ରୀ ଗାଇବ
ବିହଗର ହାତ ବାଜି;-
ନଥିବତ ସନ୍ନିଧେ –
କହଇଗୋ ପ୍ରିୟ ଏ ଗୁରୁ ବିରହ
ସହିବ ତରୁଣ ହୃଦେ ?

ଅଶ୍ରୁ ସିକତ ଗଣ୍ଡରେ କର-
ଭରାଦେଇ ପ୍ରିୟତମ –
ରହିଁ ରହିବଗୋ ଅସୀମ ଅପୂନେ
ଅଭାଗା ଚକ୍ର ସମ ।

କ୍ଲାନ୍ତ କୋକିଳ ଫେରିବ ନିଳୟେ
ଶେଷ ଗଜଲ ଗୀତ ଗାଇ;
ତୁମର ବେଦନା ବଢ଼ିଯିବ ସିନା –
ଅବସାନ ହେବ ନାହିଁ ।
ଭୃଙ୍ଗ ତ ହେବ ଡ଼ିକା –
ଶୁଭ୍ର ନଳିନ ବଦନେ ଟାଣିବ
ନିଶୀଥିନୀ ଯବନିକା ।

ସନ୍ଧ୍ୟା ଯେବେ ଗୋ କବରୀରେ ଫୁଲ
ଖୋସିବ ଗୋଟିକ ଗୋଟି,
ଓଢ଼ଣାର ତଳୁ ଚନ୍ଦ୍ରିକା ହସ
ଆସିବ ସଧୀରେ ଫୁଟି ।

ତା'ରେ ଗୁନ୍ଥି ଗୁନ୍ଥି ଗଟେଣ୍ଡି ଲୋତକ
ରଚିବ ଶୁଷ୍କ ଗାର;
ସ୍ନିଗ୍ଧ ସମୀରେ ତୁମର କୋମଳ -
ତ୍ରୁଟି ହେବ ଥର ଥର;
ଗୁରୁ କୋହ ଆଘାତରେ,
ବେପଥୁ ଶରୀର ଢ଼ାଳି ହୋଇଯିବ
ଶୂନ୍ୟ ତଳପ ଚରେ ।

ଧରଣୀ ଖୋଜିବ ପ୍ରିୟକୁ ତାହାର
ରଚିବାକୁ ପ୍ରେମ ଲୀଳା
ଧୀରେ ଧୀରେ ଆସି 'ଶାନ୍ତ' କହିବ
ଉରସେ ମଧୁର ଖେଳା ।

ଝରିବ ଅଧରୁ ଜ୍ୟୋତ୍ସ୍ନା ମଦିରା,
'ଶାନ୍ତ' ଡ଼ାକିବ 'ପ୍ରିୟା';
ଧରଣୀ କହିବ 'ଆସିଲ ଗୋ ପ୍ରିୟ,
ଏଇ ଦେଖ ତୁମ ହିୟା;'
ଢ଼ଳାଇ କର ଅବଶେ -
ହାତ ମାରି ଦେବେ ଖୋଜିବ ଗୋ ମତେ
କହିବ 'ମୁଁ ନାହିଁ ପାଶେ' ।

ଶଯ୍ୟାର ଖାଳ ଆସ୍ତର ତଳେ
ଥିବ ଅଜାଣତେ ଲୁଚି,
ଯେତେ ଯେ ଢ଼ାଳିବ ଲୋତକ ବଧୂର
ବକ୍ଷରେ ନେବ ପୋଛି ।

କ୍ଷିପ୍ତ ମାନସେ ବସିଲେ ତଳପେ
ଗଣ୍ଡେ ଚଡ଼ିବ ଝରି-
ଚୁମ୍ବନ ଦେବି ଅଶ୍ରୁ ରୂପରେ
ଗାଢ଼ ଆଶ୍ଳେଷ କରି;
କାହାର ଏ ଅଭିଶାପ ?
ପୀରତି ଅରପି ବିଚ୍ଛେଦ ଭୋଗ-
ଏଥୁ ବଳି କାହିଁ ପାପ ?

ଭାବି ଭାବି ଯେବେ ଲୁଣ୍ଠି ଯିବ ଥକା
ରୁଦ୍ଧ ବେଦନା ଭରେ;
ହୃଦୟ ପିଣ୍ଡେ ତପ୍ତ ଶୋଣିତ
ନବହିବ ଖରତରେ;

ନ ଫୁଟିବ ଭାଷା କଣ୍ଠରେ ଆଉ,
ତନୁରେ ଛୁରିବ ଝାଳ;
ଭାବିବ ପ୍ରିୟର ଆସିଛି ଯେ ଏବେ
ଜୀବନ ମରଣ କାଳ ।
ସମୀରେ ଆସିବ ଧାଇଁ-
ଭାଗ୍ୟ ତୁମର ପୋଛି ଦେବ ପ୍ରିୟ
ସିକ୍ତ କପାଳ ଛୁଇଁ ।

ନୟନ ମେଲାଇ ଚାହିଁବ ଯେବେ ଗୋ
ମୁକ୍ତ ତାରକା ପଥେ,
ଗୀତ ଗାଇ ଗାଇ ଥାପି ଦେବ ଧୀରେ
ମନ୍ଦ-ମଳୟ-ହାତେ,

ଚନ୍ଦ୍ରିକା ବେଶେ ଆସିବ ଗୋ ପାଶେ
ବୃନ୍ଦା ବାତାୟନ ଧାରେ;
ଭୁଜଙ୍ଗ ମଥା ଦେଇ ପରଶି ବଦନ
କହିବ ମଞ୍ଜୁଳ ଗିରେ—
'ନିଶି ହେଲା ଘନଘୋର—
ଆସ ଆସ ପ୍ରିୟ ପ୍ରେୟସୀକୁ ଧର
ମଧୁର ନିଦ୍ରା କର ।'

ଆଖି ବୁଜି ଯେବେ ଶୋଇବ ଅବଶେ
ପ୍ରିୟା ଆଶ୍ଳେଷ ଲଭି,
ଦୂରେ ଗୁଳସିଞ୍ଚ ସପନ ଗାଇଣେ
ତୁମରେ ମୁଁ ଭାବି ଭାବି ।

ସେଇ ଭୂବନରେ ଭ୍ରମିବା ବେଳଏଁ
ହୃଦୟ ହୃଦୟେ ରଖି;
ବଦନମଧ୍ୟେ ଗ୍ରହି ଗ୍ରହି ଭଲ ପାଇ
ଅଧର—ପୀୟୂଷ ଚାଖି ।
ନିଶୀଥିନୀ ଯିବ ପାହି,
କଂପିତ ହୃଦେ ଡାକ ଉଠିବ ଗୋ
'ପ୍ରିୟା କାହିଁ, ପ୍ରିୟା କାହିଁ !'

ନିରବଧି ଏଯେ ପାଏ ପ୍ରିୟା ନିଜେ
ପ୍ରଣୟ ଅଶ୍ରୁ ଦାନ;
ନିତି ନିଶା-ଶେଷେ ଦେନେ ଉପହାର—
ସପନର ଚୁମ୍ବନ ।

ଯାହାର ବିୟୋଗ ଶୀର୍ଣ୍ଣ କରିଛି
ପ୍ରିୟର ତରୁଣ ତନୁ—
ପ୍ରେୟସୀ ତାହାର ଭୁଲିବ କେମନ ?
ଯେ ଛୁଟିଦେବ ତା'ରେ ମନୁ ?
ହୃଦରେ ମିଳନ କାହିଁ ?
ପ୍ରିୟ ବିନା ତାର ପ୍ରେମ ବିଳାପଇ
କପାଳରେ ହାତଦେଇ ।

ଏ ଭଳି ବେଦନେ, ଏ ଶୁଷ୍କ ବିରହ
ଚିତ୍ତରେ ସ୍ମୃତି ଧରି —
ଦୁର୍ବିଷହ ଏ ଜୀବନ ନୁହେଁକି
ଦଗ୍ଧ ବୃକ୍ଷ ପରି ?

ପ୍ରଣୟରୁ ବଳି ନାହିଁ ତ ସାଧନା,
ବିୟୋଗରୁ ନାହିଁ ପାପ;
ପାପ-ଘଣ୍ଟ ପଟେ ରଚନ୍ତେ ବିଧାତା
ମୃଣ୍ମୟ ଏକ ସ୍ତୂପ;
ମିଳନ ଆସିବ ଫେରି —
ଶାନ୍ତ ପ୍ରଣୟ ଗନ୍ଧେ ଆମରି
ଅନ୍ତର ଯିବ ଭରି ।

---

## ଆହ୍ୱାନ

ଯଉବନେ ମୋର ନାହିଁ ଆଉ ପ୍ରେମ ଲାଳସା
ହଜିଗଲା ଯେବେ ଜୀବାକାଶ ଜ୍ୟୋତି ଭରସା,
ପରାଣର ଯେତେ କଉତୁକ ଖେଳ',
କାନ୍ତ କ୍ରୀଡ଼ିତ - କନକତ -ଭେଳା;
ଜଳଧି - ଶିଖରେ ଗଲା ଯେବେ ଭଜି ସହସା,
ଯଉବନେ ମୋର ନାହିଁ ନାହିଁ ପ୍ରେମ ଲାଳସା ।

ଭାବ ଭାବ ଭାବ ଭାଜଇ ନପାଇ ଆଶ୍ରୟ;
ବିରହ - ଦୁଆରୁ ଫେରି ଆସେ ସବୁ ସେନେହ,
ଅଧା ଏ ଗୁନ୍ଥା କୁସୁମର ହାର
ଅଧା ଲେଖା ଗୀତ ପିଚ୍ଛିଳତର;
ପୂର୍ଣ୍ଣ କେ କରେ ଦୁନିଆରେ କେହି ନାହିଁ ଯେ ?
ଭାବ ଭାବ ଭାବ ଭାଜଇ ଅଜଣା ରାଇଜେ ।

କିଏବା ଜାଣିବ ମରମର ଶତ ଯାତନା
ନାହିଁ ଯେବେ ପ୍ରିୟା ଦେବା ପାଇଁ ସମବେଦନା ?
କେ ଦେବରେ ପୋଛି ଅଶ୍ରୁ ଝରଣା ?
କେ ହେବରେ ମୋର ଦୁଃଖେ କରୁଣା ?
ଯେ ଥିଲି ସେ ଥିଲ କାହିଁ ଦୂରେ ଗଲ ଅଜଣା
କେହିବା ଜାଣିବ ମରମର ଶତ ଯାତନା ।

ସଂସାରେ କେ ଗୋ ମୋର ଭଲ ଅଛ ଜାଣେନା;
ପ୍ରଣୟ ଦେଇଯେ ବିରହକୁ କରେ ସାଧନା;
ତୁମ ବିନା କେହି ମନକୁ ଊଜାଣି
କାହିଁ ଶୁଣିବେ ଏ ଦଗ୍ଧ କାହାଣୀ ?
ଆସ ସଖା ଥରେ ବିରହୀ କରେ ହେ ଯାଚନା;
ସଂସାରେ କେ ଗୋ ମୋର ଭଲ ଅଛ ଜାଣେନା ।

ଆମର ଭଙ୍ଗା ତରଣୀ କରହେ ଯୋଜନ
ଶୋକ ପାରାବାରେ ବାହି ଯିବା ଶତ ଯୋଜନ;
ପ୍ରିୟା ପ୍ରିୟା ବୋଲି ଦୁହେଁ ଦେବା ରଡ଼ି,
ଉତ୍ତର ଯଦି ନଆସେ ବାହୁଡ଼ି,
ସେଇ ଅସୀମରେ ଝାସ ଦେବା ଦୁଇ ପରାଣ;
ଆମର ଭଙ୍ଗା ତରଣୀ ଲଭିବ ମିଳନ ।

# ଅବିସ୍ମରଣୀୟ

ସକଳ ଜଞ୍ଜାଳ କର୍ମରତ ଭବେ —
ସକଳ ସୁଖ ଦୁଖ ନିବିଡ଼ ଅନୁଭବେ —
ସବୁତ ଝାଉଁଳିଚ ଅକାଳ ମୁଖେ
ନବ ତମାଳ ସମ ଏ ମମ ବୁକେ;
କଣ୍ଟୁତ ନାହିଁ ମନେ ସ୍ମରଣେ;
ସଜାଇ ନିତ ନବ ଭୂଷଣେ-
ଗୋଟିଏ ବୋଲ କଥା- ଗୋଟିଏ ବୋଲ୍ ବ୍ୟଥା
ଲିଖିତ ହୃଦେ ଗାଢ଼ ପରଶେ —
ଦାରୁଣ ଭବେ ଯାହା ପାଞ୍ଚୁଥିଲ ସଖି
ଆପଣା କଲ୍ୟାଣ ସକାଶେ ।

ନତ ନିଶୀଥ ଶେଯେ ମୁଦ୍ରି ନୟନ ପତା—
କେଶ ଛଇଲେ ମୋର ଭିଜାଇ ବାହୁଲତା—
ମନ୍ତ୍ରନେ କେତେ କଥା ପାଞ୍ଚି ମନେ
ଶୁହଁ ମୋ ଦରେ ସଖି ବ୍ରୀଡ଼ିତାନନେ;
ସକଳ ବନ୍ଧନ ଆତେବାର
ଦନତ ଗଲା ଧୀରେ ପଦ୍ଧଁ ର;
ସ୍ଫୁଟିକା ସ୍ମୃତି ବାଜି—ପୀୟୂଷେ ଓଠ ମାଜି—
ନବଢ଼ି ହେଲା ଯେବେ ପୀରତି
ପୁଚ୍ଛିଲା 'ପ୍ରିୟତମା' କଷ୍ଟବ ନତ ନତି
ନିଦ୍ରାକର ମତେ କହନ୍ତି'।

ଏକନ ବନାନ୍ତରେ ଶଙ୍କିତ ହୃଦୟେ
ଦର ସିକତ ଗଳେ କହିଲ ସଂଶୟେ—
'ତୁମର ଆଗେ ମୋର ଜୀବନ ଯାଉ,'
ସବେ ମୁଁ ନତ, କଣ୍ଟୁ ନୁହେ ତ ଆଉ;
ମନର କଳପନା କପାଳେ
ଫଳିତ ଗଲା ସଖି ଅକାଳେ;
ଏକ ତୋ ହେଲା ମାନ— ପ୍ରୀତିର ଦୃତିଦାନ—
ସେ କଥା ଆଜ ବ୍ୟଥା ମନ୍ତ୍ରନେ,
ପଞ୍ଚଷ ତରୁ ମୁଁ ଯେ ଶୁଣିଲି ଡାଳେ ବସି
ଚନ୍ଦ୍ର-କୁରର ମୋ ବାହୁନେ।

ଶୁଭ୍ର ମଳ ଜଳ ପୁଷ୍କରଣୀ ବୁକେ
ଫୁଟି ଆସିବା ସ୍ଫୁରୁ କମଳକଳି ମୁଖେ-
ନୃତ୍ୟ ଖେଳ ରତ ତରୁଣ ଅଳି
ନାଚିତ ଆସୁଥିଲା ପୀରତି କଳି;
ସ୍ମୃତିର ଭଷା ସୁଧା ସଧରେ
ଅଜାଡ଼ୁ ଥିଲା ଫୁଲ ଅଧରେ;

କାହିଁ ଅକାଳେ ଆସି ମୃତ୍ୟୁ-ଗଜ ନାଶି
ନଳିନ ନାଳ ଦେଲା ତୁଟାଇ;
କ୍ଷିପ୍ର ମଧୁକର ଉଡ଼ିତ ଗଲା ଖରେ
ବ୍ୟସ୍ତ ରବେ ଧରା ଅରାଇ ।

ନମନେ ପଡ଼େ ଆଜ ପ୍ରାଣ ଅଜଡ଼ା ସ୍ନେହ—
ହୃଦୟେ ଥାପି ମଥା ଅରପି ଦେବା ଦେହ—
ନୂପୁର ସଙ୍କେତେ ଚାଲିବା ଠାଣି,
ଗେଲାଇ କହିବାର ସୋହାଗ ବାଣୀ,
ଅଧରେ ଟାଣି ଦର ସରମ—
ମରମେ ଢାଳିଦେବା ମରମ—
ସେ ସବୁ ଆଜି ସଖି କଳିଭ ମନେ ରଖି ?
ଗୋଟିଏ କଥା ସିନା ଅଭୁଲ—
ଏଡ଼େ ବିପୁଳ ଦାନ ଦେଇଚ ଯେବେ ପ୍ରିୟେ !
ସତତ ଗାଉ ମୋର ବେହୁଲ ।

ସକଳ ଅବସର ବିଜନ ବେଳେ ବସି—
ସକଳ ପରିଜନ ବଂଧୁ ମେଳେ ହସି—
ଏକଇ କଥା ସେ ଯେ ଅମିୟ ସ୍ରାବ
ଯୋଗାଏ ମନେ ଶତସହସ୍ର ଭାବ;
ଭୁଲାଇ ଅଯତନେ ପରତେ
ସୃଷ୍ଟିକି ପ୍ରଳୟ ଜଗତେ;
ନବୁଝେ ତନୁ ମନ- ଲାଗଇ ସଂଭ୍ରମ—
ଝାପ୍‌ସା ଦିଶେ ସାରା ଧରଣୀ,
ଧରି ମୁଁ ପାରେନା ଗୋ ନୂଆଁ ସେ ଆହ୍ଲାଦକୁ
ବୁଡ଼ିଲେ ବୁଡ଼ୁ ପଛେ ତରଣୀ ।

ଜଗତ କୋଳାହଳ ସାର୍ଦ୍ଧ ବ୍ୟବଧାନେ
ନିରତ ବ୍ୟାକୁଳିତ ଥିଲଗୋ ଅବଧାନେ;
ହୃଦୟେ ହୃଦ ଦେଇ ମିଶିବା ଆଶେ
ଘନେ ବିଜୁଳି ଯଥା ଅମର ବାସେ;
ପୂରିଛି ଆଜି ତୁମ ବାସନା—
ଆସ ଗୋ ଆସ ଶଶୀବଦନା—
ଏ ମମ ଅନ୍ତରେ ଯେତେ ସ୍ନେହ ଝରେ
ଭୋଗ ଗୋ ଭୋଗ ଅଭିମାନିନୀ;
ପ୍ରଣୟ ଦେଇ ନିତ ପାଏ ଯେ ଅନୁରାଗ
ସେ ତୁମ ପ୍ରୀତି କେବେ ଭୁଲିନ ।

---

## ମିଳନ ବ୍ୟବଧି

କେଉଁ ଅଭିସାର ପାଇଁ ଇଙ୍ଗିତ ଦେଇ ମତେ
ପ୍ରଦୀପ ଯେ ଜାଳିଗଲ ରଖି ଦୂରେ ମରୁ ପଥେ ?
କରି ପାରେ ନାହିଁ ଆଜି ଏ ଗୌରବ କଳ୍ପନା
ବନ୍ଧୁ ହେ କହ ମୋର ପ୍ରାଣେ
ଅଶ୍ରୁର ଲହରୀ ଚୂଳେ ଝରେ କପାଁ କାନ୍ତ ଜ୍ୟୋତ୍ସ୍ନା ?

ଗରଳ କେ ଦେଲ ଢାଳି ସିନ୍ଧୁ ବୁକ ଚିରି ବନ୍ଧୁ ?
ପ୍ରାଚୀ ଭାଲେ ଦେଇଗଲ କେ ଗୋ ଅସ୍ତମିତ ବିନ୍ଦୁ ?
ବିଦଗ୍ଧ କବି ଯେ ଗାଏ ମରଣ-ମନ୍ତ୍ର-ଗୀତିକା;
ବନ୍ଧୁ ହେ କହ ମୋର ପ୍ରାଣେ
ଜଳି ପୋଡ଼ି ଯାଇନକି ମୃଦୁ ପ୍ରୀତି ଅହମିକା ?

ସ୍ମୃତି ଚରଣେ ଅର୍ପଣ କରି ଆଜ କେଉଁ ଦାନ—
ମନେ ମନେ ଲଭିଛି ମୁଁ ଅପୂରୁବ ସନମାନ ?
କହି ପାରେ ନାହିଁ ସେଇ କଥାକର ତତ୍ତ୍ୱ କଥା;
ବନ୍ଧୁ ହେ କହ ମୋର ପ୍ରାଣେ
ମିଳନ ବ୍ୟବଧି ଆଜି ଦିଏ ସୁଖ କିବା ବ୍ୟଥା ?

ନଭ ପଥେ ଡାକି ଆଜି ନୈଷ୍ଠୁରର ଅପମାନ—
ରଖିଗଲ ସୃଷ୍ଟି ଦତ୍ତ ଜୀବନ ଅଦୃଶ୍ୟମାନ;
ସ୍ୱଜନର ବ୍ୟଥାତଳେ ଜଳେ ତୁମ ପ୍ରୀତି-ଶିଖା;
ବନ୍ଧୁ ହେ କହ ମୋର ପ୍ରାଣେ
ଅନୁଭବ ପାଇଁନକି ଏ ବିଷ-ଅମୃତ ଚଖା ?



# ମିଳନ ଭିକ୍ଷା

ଶରତର ହୃଦୟସ୍ନାତ ମଧୁର ଲଗନେ
ଜଳିଲା ପଦ୍ମ ପ୍ରଦୀପ ନିର୍ମଳ ଗଗନେ ।
ମୃଦୁ ବାତେ ଦୋହଲିଲା ଶୁଭ୍ର ବସ୍ତ୍ରାଞ୍ଚଳ
ବାସନ୍ତୀ ବାରୁଣୀର ସ୍ୱପ୍ନ ଦୃଗଞ୍ଚଳ;
ଚଉଦିଗେ ବଜାଏ ଉତ୍ସବ --
ମନେହେଲା ପ୍ରକୃତିର କୁଟିଳ ବିଭବ ।

ମନେ ପଡ଼େ ଆଜି ସଖି ! ଅଧା ଲେଖା କାବ୍ୟ,
ଝଙ୍କାରିତ ପ୍ରୀତି - ବୀଣା ହୃଦୟ ଅନୁଭାବ୍ୟ;
ମନେହୁଏ ସେତୁ ଆଜି ବିଷମ ସାଧନ;
ଧନରସେ ପତିର କି ଗୋପନ ସାଧନ ?
କ୍ରୂରକାଳ ଗୁହେଁ ଅଟ୍ଟହାସେ —
ଜୀର୍ଣ୍ଣ ମଣ୍ଡ ଉଠେ ଥରି ପ୍ରଳୟ ବତାସେ ।

ପ୍ରାନ୍ତରର ପଦ୍ମ ସମ ସମଗ୍ର କାହାଣୀ,
ଚିତ୍ତେ ମମ ମେଲି ଆସେ ପାଖୁଡ଼ା ଜଳାଣି;
ନୃତ୍ୟକରେ ତହିଁ ଭ୍ରମି ଗୁଞ୍ଜାଣୀ-ଷଟ୍‌ପଦ,
ଝଙ୍କାର ପରାଣେ ତୋଳେ ବିନୋଦ ସଂପଦ;
ହେଜେ ସବୁ ମାନସ କଳ୍ପନା-
ପ୍ରୀତି ପାଇଁ ଯୋଗେ ଯିନା ବିରହ ବେଦନା !

ଶୈଳ ଶୃଙ୍ଗେ ଲୁଚିଯାଏ ତପ୍ତ ବିବସ୍ୱାନ୍;
ପ୍ରକୃତି ରାଜ୍ୟରେ କେହୁ ନୁହେ ବନ୍ଦିସ୍ଥାନ;
ଭୃଙ୍ଗମାଳ ଗଲେ ବର୍ଜି ସରସିଜ ବନ-
ଧନ ଶୂନ୍ୟ ନୃପ ପାଶ ତେଜେ ଯେସନ୍ତେ ଜନ;
ସବୁ କରେ ନିବୃତ୍ତ ନିର୍ଣ୍ଣୟ -
ଆତଙ୍କିତ ଭବେ ପ୍ରାଣୀ ଗଣଇ ସମୟ ।

ବ୍ରଜରୁ ଫେରିଚି ଗାଈ ସ୍ତନନ୍ଧୟ ପାଶେ-
କ୍ଷୁଦ୍ର ମୋ ଶିଶୁଟି ଗୃହେଁ ମୋ ହସେ ହତାଶେ;
ବକ୍ଷେ ମୋର ମଥାଦେଇ ଡାକେ ଭ୍ରମରେ ଗୋ-
ସ୍ମୃତି ରଖିଗଲ ଆହା ଶିଶୁ ଅଧରେ ଗୋ;
ଦେବାଳୟେ ସନ୍ଧ୍ୟା ଶଙ୍ଖ ବାଜେ,
କ୍ଷୀଣାଲୋକେ ଗୃହେଁ ପ୍ରୀତି-ପୁତ୍ତଳିକା ସାଜେ ।

ସୁପ୍ରଶସ୍ତ ରାଜମାର୍ଗେ ଗୁଲଚି ଜନତା-
କେ ପୁଣି ଫୁଲଇ ଗ୍ରୀବ କେ ନୁଆଁଇ ମଥା;
କେ ଭୁଲଚି ଆପଣାର ପୂର୍ବ ଜୀବନିକା;
କେ ପୁଣି ପଥ ମସ୍ତକେ ଆଙ୍କେ ଅଶ୍ରୁଟିକା;
ନୁହେ କିଛୁ ଅସମ୍ଭବ ଭବେ-
କ୍ଷୁଧାଗ୍ରସ୍ତ କାଳଚକ୍ର ବୁଲୁଚି ମାରିବେ ।

ବ୍ୟତିବ୍ୟସ୍ତ ସୁଭଙ୍ଗର୍ଦ୍ଧା ଓଠେ ଆଜ ମନେ-
ବେନତ୍ରାଣେ ଯେଉଁକଥା ଘଟିତ ଗୋପନେ;
କେତେ ଭାଷା କେତେ ଆଶା ମଧୁର ଅଧ୍ୟାୟ,
କିନ୍ତୁ ଯେ ଯାଇଛି ସଖି ! ଇନ୍ଦ୍ରଧନୁ ଛାୟ;
ପ୍ରତ୍ୟୁଷକୁ ମର୍ମ ଛଟକେ ଜାଳ
ପଚ୍ଛରେ 'ବିରହ ଆଉ ଅଛି କେତେ ବାକି ?'

ଯେଉଁଦିନ ସେ ନିରଜନ ସୈକତେ ଆମ୍ଭେ,
ସାନ୍ଧ୍ୟ ଶୋଭା ଉପଭୋଗେ ମଗ୍ନ ଥିଲୁ ଆମେ;
ଥିଲ ବେନ କରାଙ୍ଗୁଳି ସେନେହେ ଛନ୍ଦିତ,
ଅସ୍ତଗାମୀ ରକ୍ତ ରବି କିରଣ ରଞ୍ଜିତ,
ରତ୍ନାକର ଯାଉଥିଲ ଗାଇ-
ଲହରୀର ମୃଦୁ ଲୟେ ମାଦଳ ବଜାଇ ।

ଭସାଦେଇ ତେଜେ କ୍ରୌଞ୍ଚ ମେଳି ଶ୍ୱେତ ପକ୍ଷ,
ଧାଉଁଥିଲ ମେଘଦୂତ ଯକ୍ଷ ସମକକ୍ଷ,
ସେଦିଗେ ନିର୍ବେଦେ ଚାହିଁ ତୁମ ନେତ୍ର ବେନି
ହୃଦ କୋଣେ ଲୁଚ୍ଛଇଲ କେତେ କଥା ଯେନି;
କ୍ରୌଞ୍ଚ ଗଲା ଚକ୍ରବାଳେ ଢଙ୍କି-
ଶାଳବନେ ବିଳପିଲ ଚକ୍ର ବ୍ୟଥା ଭଜି ।

ମୋ ଆଡେ ଚାହିଁଲ ସଖି ବୁଲାଇ ବଦନ-
ନେତ୍ର ପ୍ରାନ୍ତେ ଦଳ କେଉଁ ବିକଳ ଅଞ୍ଜନ;
ଅଧରେ ନଥିଲା ସ୍ନେହ ସୋହାଗର ବାଣ;
ଅକୁହା କଥା ଅନ୍ତର ଦେଉଥିଲା ଧାର
ତଥାପି ଓଠେ ଫୁଟାଇ ହାସ—
ତେଜିଥିଲ ଗଣ୍ଡେ ଘର୍ମ ବିବଶ ନିଶ୍ୱାସ ।

ମଞ୍ଜୁଳା ବଦନ ଢାଳି ମୋର ବକ୍ଷ ତଟେ,
କହିଲ ଆଶା-ନିରାଶା - ସ୍ନେହସିକ୍ତ କଣ୍ଠେ;
'ଜୀବନକୁ ଧନ୍ୟ ତୁମେ କଲଗୋ ସଫଳ,
ପ୍ରେମ ମଧ୍ୟେ ବିକଶିତ ଶିଶୁ-ଶତଦଳ;
ସ୍ୱଚ୍ଛ ପ୍ରୀତି-କୁସୁମ ଚୟନେ
ତହୁଁ ବଳି ସୌଭାଗ୍ୟ କାହିଁ ଏ ଜୀବନେ ?'

ମର୍ମକଥା ବୁଝିବାରେ ନଥିଲା ମୋ ତର;
କେ ଜାଣଇ ତୁମ ପ୍ରାଣ ହୋଇବ ଆଖର ?
କହିଗଲା ମନସ୍ତତ୍ତ୍ୱ ମନେ ମନେ ଧୀରେ
'ମାସ କେତେ ଅଛି ତୋର ପ୍ରିୟ ବିକ୍ଷିତିରେ,'
ଶ୍ଳଥ ବାତେ ଗଳାଉ ଚହଲି
କେଉଁ ଅଜଣା ଦେଶର କରୁଣ ମୁରଲୀ ?

ଆଜି ସେହି ବସୁଧା ଏ, ସେହି ସିନ୍ଧୁ ତୀର,
ଆଜି ସେହି ପ୍ରଦୋଷ ଏ, ସେହି ମଳ ମର,
ଆଜି ସେହି ବାଲିଶଯ୍ୟା-ସବୁହିଁ ନିକଟ;
ବ୍ୟଥାଞ୍ଜନେ ଚିତେ କିନ୍ତୁ ସ୍ମୃତି ଚିତ୍ର ପଟ-
ଦୂରୁଶୁଭେ ଚକ୍ରବାକ ରବ;
କାହୁଁ ଯିବ ପୂର୍ବଜନ୍ମ କୃତ ପରାଭବ ?

ଆଜ ସଖି ! ଶରତର ଭୁବନ ଅଙ୍ଗନେ
ବିଜୟର ପଟୁଆର ଲାଗିଛି ଉନ୍ମନେ;
କେ ଥୋଉଛି ଦୀପାବଳୀ ଜଗତୀ ପ୍ରାଚୀରେ;
କେ ଗାଉଛି ପ୍ରୀତି-ଗୀତି କଳକଣ୍ଠ ଗିରେ;
ଛୁଟି ଅଛି ଆନନ୍ଦର ସ୍ୱାଶ —
ଦଗ୍ଧ ମୁଁ ଅଶ୍ରୁ ନିରେଖେ କରପଦ ପାଶ ।

ବିଷମୟ ଯୌବନର ଶୁଷ୍କ ମଧୁ କୋଷେ
ଯା' ଦେଇଚ ସାଇତିଛି ଗଭୀର ସନ୍ତୋଷେ;
ଏକଭାଷା, ଏକବାଣୀ, ଏକଇ ଗୃହାଁଣୀ-
ମର୍ମେ ମୋର ବୁହାଇଚ ସଚସ କାହାଣୀ,
ଅନ୍ତମର କଦର୍ଯ୍ୟ ଅୟନେ—.
ମଧୁର ପାଥେୟ ସେଇ ବିଷମ ଜୀବନେ ।

ଯା' ଦେଖିବି ଭବମଞ୍ଚେ ଚକିତ ନୟନେ–
ସବୁ ରଖିଯିବି ଖାଲି ତୁମର ଅଙ୍କନେ,
ପରଜନ୍ମ ପାଇଁ ହେବ ଅମୃତ ନିଶାଣ;
କାବ୍ୟାମୃତେ ତୃପ୍ତି ଲଭୁ ନିର୍ବାସିତ ପ୍ରାଣ;
ଜୀବନର ଅନ୍ଧକାରେ ଜାଗି
ତୁମର ମିଳନ ମାଗେ ପ୍ରୀତି ଅନୁରାଗୀ ।

---

## ସଂକ୍ଷିପ୍ତ ଜୀବନୀ

ପ୍ରାଚୀନ ଯୁଗର ଇତିହାସ ପ୍ରସିଦ୍ଧ ଖେଡ଼ସିଙ୍ଗି ରାଜ୍ୟ ଅଧୁନା ଗଞ୍ଜାମ ମଣ୍ଡଳରେ ସୋରଡ଼ା, ବଡ଼ଗଡ଼, ଧରାକୋଟ, ଶେରଗଡ଼ ନାମରେ ଚତୁର୍ଦ୍ଧା ଆକୃତି ଧାରଣ କରିଅଛି । ସେଗୁଡ଼ିକ ପୂର୍ବଯୁଗରୁ ଏ ପର୍ଯ୍ୟନ୍ତ ଗଙ୍ଗକାଦମ୍ବବଂଶୀୟ ନରପତିଙ୍କ ଶାସନରେ ଥିଲା । ତନ୍ମଧ୍ୟରୁ ଧରାକୋଟରେ ପୂର୍ବେ ଜୟସିଂହ ନାମକ ସୁବିଖ୍ୟାତ ରାଜା ରାଜତ୍ୱ କରୁଥିଲେ । ତାଙ୍କର କନ୍ୟା ଥିଲେ ପାର୍ବତୀ ଦେବୀ । ସେ ଗଞ୍ଜାମର ସୁବିଖ୍ୟାତ ଗଙ୍ଗବଂଶୀୟ ମହାରାଜ ଦରବାରରେ ପଦ୍ମନାଭ ଦେବ ନାମକ ପ୍ରାଚୀନ ଟିକଲୀ ଅଧୀଶ୍ୱରଙ୍କ ପାଣିଗ୍ରହଣ କରିଥିଲେ । କିନ୍ତୁ ସେ ସପତ୍ନୀମାନଙ୍କ କୂଟମନ୍ତ୍ରବଳରେ ସଂସାର ସୁଖରୁ ବଞ୍ଚିତ ହେବାକୁ ବାଧ୍ୟ ହେଲେ ଏବଂ ତପସ୍ୱିନୀ ଭାବେ ଭଗବଦାରାଧନାରେ କାଳ କଟାଇଲେ । କେତେ ସମୟ ପରେ ପଦ୍ମନାଭଦେବ ପାରଳାଖେମୁଣ୍ଡିଠାରେ ଇହଲୀଳା ସମ୍ବରଣକଲେ । ତାହା ଶୁଣିଲାକ୍ଷଣି ପାର୍ବତୀ ନିଜର ବପ୍ୟୋଗୁଣ ସ୍ୱରୂପ ଐଶ୍ବର୍ଯ୍ୟକୁ ଜଳାଞ୍ଜଳି ଦେଇ ଖେମୁଣ୍ଡି ଗଲେ । ସେଠାରେ ସତୀ ପତିଙ୍କସହ ଅନୁଗମନ ପନ୍ଥାରେ ନିତ୍ୟଧାମ ପ୍ରୟାଣ କଲେ । ଅଦ୍ୟାପି ସେହି ଦାହ ସ୍ଥାନରେ ସତୀକୁଣ୍ଡ ଅଛି । ସେଠାରେ ପ୍ରତିବର୍ଷ ପୂଜା ଅର୍ଘ୍ୟ ଏ ପର୍ଯ୍ୟନ୍ତ ଯଥୋଚିତ ରୂପେ ହେଉଛି । ଇତି

ରଚକ

## ପୂର୍ବାର୍ଦ୍ଧ

ଭୃତ ଋଷିକୁଲ୍ୟା ପୁଣ୍ୟ ଜଳ ସ୍ରୋତ, ପବିତ୍ରିତ ରତ୍ନାସନ,
ଶଶାଙ୍କ ଶେଖର ବରେ ଆବିର୍ଭୂତ ଅଶେଷ ଲକ୍ଷ୍ମୀ ଆସନ ।
ଶରଣାଗତର ଆରତ ଭଞ୍ଜନ ଦେବୀ ଅଭୟ ପ୍ରସାଦ,
ବୁଧ ଚିନ୍ତାମଣି କବି କାମଧେନୁ, ଖ୍ୟାତଜନ ଆଶୀର୍ବାଦ ।
ଉତ୍କଳର ଭୋଜ- ନୃପ ଅଳଂକୃତ କାଦମ୍ବ ବଂଶ ଲଳିତ,
ସୁର ପୁର ସମ ଧରାକୋଟ ଧରା- ଧରାଧୀଶ୍ୱର ପାଳିତ ।
ବୀର ଧର୍ମକ୍ଷେତ୍ର ଶ୍ରୀ ସଚରାଦିତ୍ୟ- ପ୍ରମୁଖ ଭୂପ ତିଳକ;
ନିତ୍ୟ ସୁଲଳିତ ଚରିତ୍ର ବିଦିତ ବଇରି ଗର୍ବ ହାରକ ।
ଘୋର ପଞ୍ଚାନନ ଯୁଗଳ ମଣ୍ଡନ ଦ୍ୱାରର ମୂର୍ତ୍ତି ସଂସ୍ଥିତ,
ବିଚିତ୍ର ଦୁକୂଳ କୁଳ ଆସ୍ତରିତ ବ୍ରହ୍ମାସନେ ଯାହା ସ୍ଥିତ ।
ବୈକୁଣ୍ଠ ଭୁବନ ସମାନ ଭବନ- ଅନ୍ତରାଳ ଅଳଙ୍କାର,
ଚନ୍ଦନ ଚର୍ଚ୍ଚିତ ପୁଷ୍ପମାଲ୍ୟାଙ୍କିତ ରମଣୀୟ ମହାଦ୍ୱାର ।

ରତ୍ନ ହାରାବଳୀ କଳିତ ସୁଷମା ସମନ୍ୱିତ ସର୍ବଗାତ୍ର,
ଚିଦ୍‌ଘନ ଆନନ୍ଦ କନ୍ଦ ସୁରାସୁର ଶୂର ଯହୁଁ ବହୁଶତ ।

ଅଶେଷ ସାମନ୍ତ- ସୀମନ୍ତିନୀ ଗଣ- ସୀମନ୍ତ ସିନ୍ଦୂର ବନ୍ଦ୍ୟ,
ସାମନ୍ତ ପ୍ରଣତ ମିନତି ସମ୍ପତ୍ତି ମିଳି ଯିନା ଶୋଭସିନ୍ଧୁ ।

ଯାହାଙ୍କ ଆଶ୍ରାରେ ବନ୍ଧୁ ବିପ୍ରଜନ ରଚନ୍ତି ଆଶୀର୍ବଚନ,
ଯାଚକ ସଂହତି ଦରଶନେ ନିତି ଅର୍ପନ୍ତି ଅଜସ୍ର ଧନ ।

ତହୁଁ ଜୟସିଂହ ନାମେ ନରପତି ବଇରି ଗଜ କେଶରୀ,
ଶରଣ ରକ୍ଷଣ ପରାୟଣ ବୀର ଖ୍ୟାତି-ପାରାବାର ତରୀ ।

ଖଣ୍ଡଚନ୍ଦ୍ରଚୂଡ- ଭଜନ ନିରତ, ନୀଳାଚଳ ପଞ୍ଚାନନ,
ଭକତି-ଅମୃତ- ପାନେ ଉନମତ୍ତ ସର୍ବଦା ଯାହାଙ୍କ ମନ ।

ପଞ୍ଚୋତ୍ତର ବଂଶ- ବିଷୟାଧିପତି- ବଂଶର ମଉଡ଼ ମଣି,
ବିନୟ ଶଉର୍ଯ୍ୟ ମର୍ଯ୍ୟାଦା ଗାମ୍ଭୀର୍ଯ୍ୟ ଧଇର୍ଯ୍ୟ ଗୃତୁର୍ଯ୍ୟ ଖଣି ।

ନୀତି ପରାୟଣ ନିତି ଦୟାଦାନ- ପ୍ରବୀଣ ମାନସ କୃତ,
କ୍ଷମା ଗୁଣେ ଯହିଁ ନଥିବ ଜଗତେ ତାଙ୍କ ତୁଲ୍ୟ କେ ବିଶ୍ରୁତ ।

ଅଷ୍ଟ ଅଇଶ୍ୱର୍ଯ୍ୟ ପରିପୂର୍ଣ୍ଣ ଯା'ର ରତ୍ନମଣି ଗନ୍ତାଧର,
ସମର ଅଙ୍ଗଣେ ବାରଣ ସ୍ଖଳନେ ନାହିଁ ତାଙ୍କ ପଟାନ୍ତର ।

ପୁରନ୍ଦର ରତ୍ନ ଭାସ୍କର କନକ- ମୁକୁଟ ଶୋଭିତ ଶିର,
କ୍ଷିଳା ହଇହୟ ବଂଶଜ ନରେଶେ ମାନୁଥାନ୍ତି ଯହୁଁ ଗିର ।

ଗଙ୍ଗା ଗଉତମୀ ସୀର୍ଘ ପ୍ରସାରଣ ବିଶାଳ ଧରଣୀଶ୍ୱର,
ଦନ୍ତି ପତି ନୀତି ଯା' ବନ୍ଧୁ ତା ପ୍ରତି ପ୍ରଶଂସନ୍ତି ମନୋହର ।

ଚନ୍ଦନ ଚର୍ଚ୍ଚିତ, ପୃଥୁଳ ବଳିଷ୍ଠ ଭୁଜ ଯୁଗଳେ ରାଜିତ,
ଚନ୍ଦ୍ର ହାସ ଦେଖି ନବୁଜେ ଯେ ଆଖି ଭବେ କାହିଁ ସୁଶୋଭିତ ।

ପୁନ୍ନବନ୍ତ ହେଲେ ଶଙ୍କର କୃପାରୁ ନଥିଲା କେଉଁ ଅଭାବ,
କନ୍ୟକା ରତନ ଲାଭ ଆଶା ପୂର୍ଣ୍ଣି ଜାତ କଲା ତାଙ୍କ ଭାବ ।

ନିତି ନିତି ଶିର ଭଜିଲେ ଭକ୍ତିରେ ଜନକ ଦୁର୍ଗା ପଯୂର,
ମନାସିଲେ ମନେ ଅସଂଖ୍ୟ ମନାସ ସେବନେ ହେଲେ ତତ୍ପର ।

ବାଞ୍ଛା ସିଦ୍ଧି ବାଞ୍ଛି ଅପାର କାଞ୍ଚନ କଲେ ରାଜା ଅର୍ଥଦାନ,
ସେବାରେ ସନ୍ତୁଷ୍ଟ ସଙ୍କଟ ତାରିଣୀ କଲେ କରୁଣା ପ୍ରଦାନ ।

କାଳକ୍ରମେ ତାଙ୍କ ମଧ୍ୟମା ରାଣୀଙ୍କ ହେଲା ଶୁଭ ଗର୍ଭୋଦୟ,
ରୁଚି ବେଶ ଭୂଷା କ୍ରମେ ଆନ ଆନ ହେବାରେ ନଥିଲା ଥୟ ।

ଦେଖି ଦେଖି ଗର୍ଭ ନବମ ମାସରୁ ଶେଷ ଦିବସ ଅତୀତ,
ଦୁଇ ଗୁରୁଦିନ ଦଶମରୁ ଭୋଗ ହୁଅନ୍ତେ ହେଲେ ବ୍ୟଥିତ ।

ମାଘ ଶୁକ୍ଳପକ୍ଷ ଗୁରୁ ପଞ୍ଚମୀରେ ମୀନେ ରେବତୀ ଶଶାଙ୍କ,
ଏହି ଶୁଭଯୋଗେ ମାହେନ୍ଦ୍ର ମୁହୂର୍ତ୍ତେ ଜନମିଲା କନ୍ୟା ତାଙ୍କ ।

ଛଅ ଆଠ ଷଷ୍ଠୀ ପୂଜା ଆଦି ସବୁ- ବିଧି ହେଲା ସମାପତ,
ନାମକୃତି ମହା ମହୋତ୍ସବ ଦିନ ଆସି ହେଲା ଉପଗତ ।

ପାର୍ବତୀ ଦେବୀଙ୍କ ଅନୁଗ୍ରହ ଜାତ, ନାମ ଦିହଲେ ପାର୍ବତୀ,
ଶୁକଳ ପକ୍ଷର ଚନ୍ଦ୍ରମା ପରାଏ ବଢ଼ିଲେ ସେ ଜ୍ୟୋତିଷ୍ମତୀ ।

ଷଷ୍ଠମାସେ କଲେ ବହିର୍ନିଷ୍କ୍ରମଣ ଗମିଲେ ଦେବ ଦର୍ଶନେ,
ଦରଶକ ନର ନାରୀ ଜନନେତ୍ର ଧନ୍ୟକରି ସଂଦର୍ଶନେ ।

ଶୁଭ ଦିନେ ଅନ୍ନ-ପ୍ରାଶନ ବଢ଼ିଲା ପ୍ରବେଶ ପଞ୍ଚ ବତ୍ସର,
ବିଦ୍ୟାରମ୍ଭ କଲେ ତହୁଁ କେମାମଣି କନ୍ୟାରତ୍ନ ମନୋହର ।

ଶିଖିଲେ ଅଳପ ଦିନେ ବହୁ ବିଦ୍ୟା ସାକ୍ଷାତେ ସେହୁ ଭାରତୀ,
ସଙ୍ଗୀତ ରଙ୍ଗରେ ବହୁ ବିଧ ଯତ୍ନେ ବଢ଼ିଗଲା ପ୍ରତିପତ୍ତି ।

ବୀଣା ଜଣା ବାଣୀ ବୀଣା ଯନ୍ତ୍ର ଧରି ବଜାନ୍ତି ଗାଇ ସଙ୍ଗୀତ,
ତା' ଶୁଣି ଉସତ ହେଉଥାଏ ନିତି ପୂଜ୍ୟା ମହିଷୀଙ୍କ ଚିତ୍ତ ।

ବୀଣାରେ ପ୍ରବୀଣା ବୀଣା ବତମ ସେ ହେଲେ ଭବେ ଅବଗତ,
ଟିକାଲୀ ଭୂପତି ବୀର ପଦ୍ମନାଭ କର୍ଣ୍ଣେ ତାହା ଉପଗତ ।

ଉତ୍କଳ ମଣ୍ଡନ- ବୀର ପଦ୍ମନାଭ ଗଙ୍ଗବଂଶ ମୁକ୍ତାମଣି,
ବହୁ ବିଦ୍ୟାବିଧୂ- ସନ୍ତତ ସେବିତ କବି ପଣ୍ଡିତ ଅଗ୍ରଣୀ ।

ଉତ୍କଳ ମଣ୍ଡଳେ ନିର୍ମଳ ଯଶେ ତାହାଙ୍କ ପରିପୂ ବୀର,
ଧୃତି ମତି ଆଦି ସର୍ବ ଗୁଣ ଗଣେ ଖ୍ୟାତ ଅରଜିଲେ ଧୀର ।

ଶୁଣିଲେ ପାର୍ବଣ- ହେମାମଣିଙ୍କର ରୂପ ଗୁଣ ମନୋହର,
ଲୁଚିବ ବା କାହିଁ ସୁବାସ କୁସୁମ- ସଉରଭ ଜଗତର ।

ଗୋଲପ ସୌରଭେ ଯଥା ଚଞ୍ଚରୀକ, ଆକୃଷ୍ଟ ହେଲେ ନୃପତି,
ପ୍ରେରିଲେ ବାରତା, ଶୁଣି ଧରକୋଟ-ନୃପ ଲଭିଲେ ତୃପତି ।

ଯେଣୁ ମହାରାଜ- ବଂଶଜ ଭୂପତି ପଦ୍ମନାଭଦେବ ବୀର,
ଉତ୍କଳ ମଣ୍ଡଳେ ସେହି ବନ୍ଧୁତାରେ ନକରିବ କେଉଁ ଧୀର ?

ନିର୍ଦ୍ଦିଷ୍ଟ ହୋଇଲ ଧରକୋଟ ହେମା ଟିକଲୀଶ ପରିଣୟ,
ଏ ମଣି କାଞ୍ଚନ- ଯୋଗ ଶ୍ରେଷ୍ଠେ ଶୁଣି ଜାତ ହେଲକ ପ୍ରଣୟ ।

ଏ ବାର୍ତ୍ତା ଶ୍ରବଣେ ତାଙ୍କ ଜନନୀ ହୋଇଲେ ଘୋର ଦୁଃଖିନୀ,
ପଦ୍ମିନୀ ବିକାଶ ଦେଖି କାହିଁ ହାସ ପ୍ରକାଶେ କି କୁମୁଦିନୀ ?

ନିର୍ଦ୍ଦିଷ୍ଟ ଦିବସ ଶୁଭ ମୁହୂର୍ତ୍ତରେ ଚଳିଲା ବିବାହ ବିଧି,
ସତେ କି ପାର୍ବଣ ହେମାମଣି ଆଜି ପାଇଗଲେ କୋଟିନିଧି ।

ସମାରୋହ କଥା ବର୍ଣ୍ଣିତ ନୋହିବ ବହୁ ସାମଗ୍ରୀ ସୁନ୍ଦର,
ଶର୍ମିଷ୍ଠା କି ସତେ ଧଇଲେ ପବିତ୍ର ଯଯାତି ନରଜ-କର ।

ଚତୁର୍ଥୀ ବିଧାନ ହୋଇଲକ ପୂର୍ଣ୍ଣ ଗଇଁଠାଳ ଛନ୍ଦି ଧରି,
ହେଲେ ପରବେଶ ନିଜ ପ୍ରାସାଦରେ ରମ୍ୟ ଟିକଲୀ ନଗରୀ ।

ବଡ ସପତ୍ନୀ-ଜନିଙ୍କ ଚରଣେ କହିଲେ ଅଭିବାଦନ,
"କରମ ଆଦର ରହ" ବୋଲି ତହୁଁ ଶୁଣିଲେ ଆଶୀର୍ବଚନ ।

ମନେ କଲେ ନିଜ ମସ୍ତକେ ବଜର ପଡ଼ିଲା ବିନା ଜଳଦେ,
ସତେକି ପ୍ରଳୟ ଘଟିଯିବ କିବା ଏହି କ୍ଷଣି ଏକ ପଦେ ।

ବିନା ଦୋଷେ ଶାପ ପାଇଲି କିପାଇଁ କରିଥିଲି କି କୁକର୍ମ,
କି ହେବ ଘଟନା ପୂର୍ବ ଜନ୍ମେ ମୁହିଁ ଭାଙ୍ଗିଥିଲି କାହା ଶର୍ମ ।

ଭାବି ଭାବି ଏହା ନିଜ ପୁର ମଧ୍ୟେ ହେଲେ ଯାଇ ପରବେଶ,
“ଗର୍ଭିଣୀ ଏତିଜମା” ଶୁଣିଲେ ସଦନ ରଟିତ ଘୋର ସନ୍ଦେଶ ।

ତହୁଁ ଆଉ ଥରେ ହେମାଙ୍କ ନୟନ ପତି ଶ୍ରୀମୁଖ ନଳିନ,
ନପାଇ ଦର୍ଶନ ଲୋତକରେ ସ୍ନାନ କରିଚଲି ଅନୁଦିନ ।

ଘନାଗମ କାଳେ ବିଧୁ ଅଦର୍ଶନେ ମ୍ଳାନ ଯଥା କୁମୁଦିନୀ,
ରବିକର ଦର୍ଶ ନଲଭିଣ ଯଥା ରହେ ମଳିନେ ପଦ୍ମିନୀ ।

ତଥା ହେମାମଣି ପତିଙ୍କ ବିରହ ସହିଲେ ହୋଇଁ କାତର,
କୃଷ୍ଣପକ୍ଷେ ଚନ୍ଦ୍ର ନଦେଖି ବିମୁଖ ହୁଅନ୍ତି କି କେବେ ତାରା ।

ଅନିତ୍ୟ ଜଗତେ ବିଧାତା ବିଧାନେ କର୍ମ ଅନୁସରି ଜୀବ,
ଭୁଞ୍ଜେ ସୁଖ ଦୁଃଖ ସେଥିକି ବିମୁଖ ହୋଇ ଅବା କି କରିବ ?

ଜନ୍ମ ଜନ୍ମାନ୍ତରେ ଯେ ଯାହା ଅରଜି ଆଣଇ କର୍ମ-ସଂପତ୍ତି,
ତାହା କାରବାର କରି ଏ ଜଗତେ ଯେଯାହା ପଥେ ଚଳନ୍ତି ।
ଲଲାଟ ଲିଖନେ ନାହିଁ କାହା ହାତ ସବେ ଅଦୃଷ୍ଟ ଅଧୀନ,
ପ୍ରାକ୍ତନ ଭୁଞ୍ଜନେ ସେ ‘ଅଦୃଷ୍ଟ’ ପଥ କେବେହେଲେ ନୁହେ ଭିନ୍ନ ।
ପ୍ରତୀକାର ଶୂନ୍ୟ ବିଷୟ ଚିନ୍ତାରେ ଅଛି କିବା ପ୍ରୟୋଜନ,
କଟାଇବି ଦିନ ଈଶ ଆରାଧନେ କରି ଯୌଗିକ ସାଧନ ।
ଏମନ୍ତ ବିଚାରି ନାରୀ କୁଳେଶ୍ୱରୀ ତୁଳସୀ ଚଉଁରା ପାଶେ,
ନିରନ୍ତର ରହି ହୋଇମାଳା କରି ରହିଲେ ବିଚ୍ଛେଦ ବାସେ ।

ଜନ୍ମିଲା ବିରାଗ ବେଶ ଭୂଷାପାଇଁ ପିନ୍ଧିଲେ ଶୁଭ୍ର ଦୁକୂଳ,
ରତ୍ନମାଳା ଫେଇ ପିନ୍ଧିଲେ ତୁଳସୀ ନଗ୍ନ ହେଲା କଣ୍ଠକୂଳ ।
ଭାଗବତ ପାଠେ ଯାପିଲେ ବାସର ମନେ ଥାପି ପତି ପ୍ରୀତି,
ବ୍ରାହ୍ମଣ ବାଳକ- ବାଳିକା ବିବାହ କରାଇଲେ ନିତି ନିତି ।

ମାଲ୍ୟ ଧୂପଦୀପ ପ୍ରଭୁ ଦେବାଳୟେ କରନ୍ତି ହରିଭିଷେକ,
ବିତରନ୍ତି ବିପ୍ର ରଙ୍କେ କୁଟୁମ୍ବିରେ ଧନ ଧାନ୍ୟାଦି ଅନେକ ।

ଯେତେ ବାର ବ୍ରତ ବର୍ଷେ କରନ୍ତି କେ କରିବ ତା’ କଳନା,
ବରଷ ବରଷ କଟାଇଲେ ତହିଁ ହୋଇଣ ଏକ ବାସନା ।

ଦିନୁ ଦିନୁ ହେଲା ଅବୟବ ଶୁଷ୍କ ତନୁ କ୍ଷୀଣୁ କ୍ଷୀଣତର,
ନିଦାଘ ସମୟେ ବନ ଲକ୍ଷ୍ମୀ ଯଥା ଶୀର୍ଣ୍ଣ ମଳିନ ବିଧୁର ।

ହାସ ପରିହାସ ଢ଼ଙ୍ଗ ଢ଼ମାଳିରେ ସପତ୍ନୀ କଟୁ ବଚନ-
ଶୁଣି ବିଚଳିତ ନହେଲା ମାନସ ଧ୍ୟାନେ ଯେହେତୁ ମଗନ ।

ନୃପ ପଦ୍ମନାଭ ପରିବର୍ତ୍ତେ ପତି ବିଷ୍ଣୁ ରୂପେ ସେ ପାଇଲେ,
ପତି ପଦ୍ମନାଭ ଚରଣ-କମଳ-ସେବା କେବେ ନ ତେଜିଲେ ।

ସାକ୍ଷାତ ଶ୍ରୀହରି ଯାର ଉଦ୍ଧାରକ ତାହାକୁ ମାନବ କ୍ରୁର
କରିବ ପାରିବ ବିରତି କପଟ ନିଜେ ହେବ ନାରଖାର ।



## ଉତ୍ତରାର୍ଦ୍ଧ

ବିତିଗଲା କେତେ ବତ୍ସର ଏମନ୍ତ ନଗଲା ପାବଙ୍କ ଦୁଃଖ,
ନିୟମାନୁଷ୍ଠାନ ବନ୍ଧେ ନ ଲୋଡିଲେ ଆଉ ସେ ସଂସାର ସୁଖ ।
ଦିନେ ଦକ୍ଷିଣାକ୍ଷୀ ସ୍ଫୁରିଲା ସଘନେ ତପସ୍ୱିନୀ ରାଣୀଙ୍କର,
ରହିଲା କରଠ ବାମ ପଟେ ରହି, ଶବ୍ଦ ଶୁଭେ ଭୟଙ୍କର ।
ଭାବିଲେ ସୁଦତୀ ଅଙ୍ଗର ଦୃଷ୍ଟାନ୍ତ ଅଶକୁନ ଅବସନ୍ନ,
କିହେବ କେଜାଣି କିଅବା ବିଧାତା କରିଛି ଭାଲେ ଲେଖନ ।
ସ୍ୱପ୍ନ ଅଦଭୁତ ଶଙ୍କା ପୂର୍ଣ୍ଣ ଚିତ୍ତ ମନ ଉଦ୍‌ବେଗ ଅସ୍ଥିର,
କାହାରେ ବୁଝିବେ କେମୂର୍ତ୍ତି ସଂସ୍ଥିତ ପ୍ରତ୍ୟକ୍ଷେ ଶୁଭେ ଗିର ।
ନକଲେ ସ୍ନାହାନ ନାହିଁ ଦେବାର୍ଚ୍ଚନ ମଣୋହିଁ ନକଲେ ପାର,
ବାରମ୍ବାର ପ୍ରଶ୍ନ କରନ୍ତି ଘାଟରେ 'କବା ସମ୍ବାଦ' ଦୁଆର ।
ବାତୁଳା ପରାଏ ଇତସ୍ତତ ହୋଇ ଲୋଡନ୍ତେ ସିକ୍ତ ନୟନ,
ନିରନ୍ତର ବୁଡି ରହିଲା ତାଙ୍କର ହେଲା ମନ ଛନ ଛନ ।

ସପତ୍ନୀ ଚଣ୍ଡ ଶୁଣି ଏ ବୃତ୍ତାନ୍ତ କଲେ ହାସ୍ୟ ମାତ୍ର ତାଳି,
କାହାର ବଚନେ ନାହିଁ ଭ୍ରୂକ୍ଷେପ ଅନ୍ତରେ ଦୁଃଖିତା ବାଳୀ ।
ଆଶ୍ୱିନ ଶୁକ୍ଳ ଅଷ୍ଟମୀ ରଜନୀ ଆସି ହୋଇଲା ପରବେଶ,
ଦେବୀଙ୍କ ପରବ ଉତ୍ସବ ଦର୍ଶନେ ବହୁ ଲୋକ ସମାବେଶ ।
ଅକାଳ ଚଡ଼କ ପରସ୍ପେ ଉଠିଲ ଦୁଆରେ ଗୁଡ଼ିଲ ନାଦ,
"ସ୍ୱର୍ଗପୁରେ ଗଲେ ରାଜା ପଦ୍ମନାଭ ଆଣିଛୁ ମୁଁ ଏ ସମ୍ବାଦ" ।
ଦୁଃସମ୍ବାଦ ଆସି କାଳ ଫଣି ପ୍ରାୟ ପହଞ୍ଚିଲ ତତକ୍ଷଣେ,
ଜାଳିଦେଲା ଘୋର- ଶୋକ-ବଡ଼ବାଗ୍ନି ଅନ୍ତଃପୁର ନାରୀଗଣେ ।
ହବ୍ୟଜ୍ଜନ ଚିତ୍ତ ଉଦୟ ହୋଇଲା ସେକ୍ଷଣି ପାର୍ବତୀଙ୍କର,
କେତେ କାଳେ ଆଜ ଦୁଃଖ କଲେ ଦୂର ଦୟାଳୁ ପରମେଶ୍ୱର ।
କ୍ଷଣକେ ବଢ଼ାଇ ସ୍ନାନ ଜଳପାତ୍ର ପିନ୍ଧି ଅମ୍ବର ସଂହାର,
ପାଦୁଶିର ଯାଏ ବନ୍ଧିଲେ ମଣ୍ଡନ ଖଚିତ ରତ୍ନ ଅଳଂକାର ।
ହର୍ଷ ଚନ୍ଦ୍ରହାସେ ଶୋଭିଲା ତାଂକର ଧନ୍ୟ ହୋଇଲାକ ପ୍ରାଣ,
ମାଣିକ୍ୟ ମୁକୁତା ରଞ୍ଜିତ ଖଣ୍ଡୁଆ ବରଷିଲେ ଉପହାର ।
ପରମ ହରଷେ ହୁଅନ୍ତ ଗଦ୍‌ଗଦ ପ୍ରଶଂସିଣ ସ୍ୱରପତ୍ତି,
କରଯୋଡ଼ି ଆଗେ ଅନ୍ତରଙ୍ଗ ଦାସୀ କହିଲା ଏହି ଉକତି ।
"ଦେଖ ବା ମାନସି କଏ ତୁମ୍ଭେ ଏଥି ଥିଲ ସାନ ପାଟରାଣୀ,
ଏକି ଅଦ୍ଭୁତ ଆଜ ବ୍ୟବହାର; ସତେ କିବା ଠାକୁରାଣୀ ।
ଦେଖ ଅନ୍ତଃପୁର ଶୋକ-ଜଳଧିରେ ରହିଛି ହୋଇ ନିମଗ୍ନ,
ତୁମ୍ଭେ ଏ ଅପୂର୍ବ ବେଶ ଭୂଷା ହୋଇ ବହିଛ ଆନନ୍ଦ ନଗ୍ନ ।
ଧଇଲ କପାଇଁ ଶ୍ରୀକରେ ଖଡ଼ଗ କସ ଅବା ତବ ମନ,
ମହାଷ୍ଟମୀ ନିଶା ଦେଖି ଭଗବତୀ ଆବେଶେ କିବା ପ୍ରସନ୍ନ ।
ନକର ସଂହାର ମାତ ଏ ସଂସାର କର ଆମ୍ଭେ ଅନୁଗ୍ରହ,
କରେ ମୁଁ ବନ୍ଦନ ତବ ପାଦପଦ୍ମେ ଲୁଚୁଅ ଏହି ବିଗ୍ରହ" ।

କରି ଅଟ୍ଟହାସ ଭାଷିଲେ, "ଶୁଣଗୋ ଯାଉଛି ମଧ୍ୟମପର୍ଯ୍ୟାଙ୍କରେ,
ଭେଟିବି ପ୍ରିୟଙ୍କୁ ଏହିକ୍ଷଣି ଯାଇ ରହିଛନ୍ତି ଯେଉଁଠାରେ ।

ଆସ ଆସ ସଖୀ ବଡ଼ରାଣୀ ପୁରେ ଯିବା ଦରଶନ ପାଇଁ,
ବିରହ ବିହ୍ୱଳା ଶୋକାନଳ ଦଗ୍ଧା ତାଙ୍କୁ ପ୍ରବୋଧିବା ଯାଇ ।

କହି କହି ଏକା ବୁଲିଯାନ୍ତେ ଘାଟେ 'କରେ ମୁହିଁ ଅଭିଯାନ',
କହିଲେ, ଦଣ୍ଡକେ ଅଟକାଅ ଅମାତ୍ୟେ ରଖାଅ ପାରକା ଯାନ ।

ଆଦେଶ ଅବଜ୍ଞା ହେଲେ ଶିରଶ୍ଛେଦ ହେବ ତହିଁ ନାହିଁ କ୍ଷମା,
ଯାଅ ତୁମ୍ଭେ ଶୀଘ୍ର ଯିବି ମୁଁ ଏକଶି ପାରଳାର ଦଭ୍ରମା ।

ଚଳିଗଲେ ମନ୍ତ୍ରୀ ଚଳିଲେ ସୁନ୍ଦରୀ ପ୍ରଧାନ ରାଣୀଙ୍କ ପୁରେ,
ଅଛନ୍ତି ଶୋକରେ ବିହ୍ୱଳା ସେ କ୍ଷିପ୍ରାରେ ଦଂଶ ବିକଳ ସ୍ୱରେ ।

ଭାଷିଲେ, "ଅଗ୍ରଜେ ! ଆନନ୍ଦ ସମୟେ କହୁଛ କାହାଁକି ଖେଦ,
ଦେଖ ସମ୍ବାଦ କରିବ ଯାଉଛି ଗାଏ ଜୀବନର ବେଦ" ।

ଏତେ କହି ତାଙ୍କ ଚରଣେ ପ୍ରଣମି ହୋଇଲେ ତହୁଁ ବିଦାୟ,
ଭାଷିଲେ, "ସଜନି ନକର ଆମରେ ବିଭ୍ରମ କୁଳଟା ପ୍ରାୟ" ।

ତକ୍ଷଣେ ସୁନ୍ଦରୀ- ଲଲାମ ଭୂଷଣ ଖୁଣ୍ଟି ନଖୁଣ୍ଟିଲ ଧରି,
ପରବେଶ ହେଲେ ମଧ୍ୟମା ନିଳୟେ ବିଳମ୍ବ ଆଉ ନକରି ।

ଭାଷିଲେ, "ଚତୁରୀ ସଖି ସୁନ୍ଦରୀଶ ! ଜୀବନ୍ତେ ଭେଟିଲ ପତି,
ଏଥର ମୁଁ ଯାଇ ଭେଟିବି ସେ ପୁରେ ନରଖ ବିବାଦ ମତି ।

ଏମନ୍ତେ ତାହାଙ୍କ ଛୁଇଁ ଚରଣାବ୍ଜ ବନ୍ଦିଲେ ଅଭିବାଦନ,
ଉଠି କରଯୋଡ଼ି ସହାସ ବଦନେ ବିଦାୟ ମାଗି ବହନ ।

ଚଳନ୍ତେ ସୁନ୍ଦରୀ ମଧ୍ୟମା ରାଣୀଙ୍କ ଉଭେଇ ଗଲା ସେ ଶୋକ,
ବିସ୍ମିତ ବଦନେ ବୋଇଲେ 'ଏରାଣୀ ! ମୁଁ କହୁଚି ତୁମେ ଦେଖ'

ଜବେତହୁଁ ଯାଇ ତୃତୀୟା ରାଣୀଙ୍କ ନଗରେ ହୋଇ ପ୍ରବେଶ,
କହିଲେ, "କପାଇଁ ଶୋକକର ପିବା ପତିପାଶେ ହୋଇବେଶ ।

ପତି ବିରହିତ କ୍ଷଣେକ ମାତର ନୋହୁଥିଲା ତୁମ୍ଭ ସହ୍ୟ,
ରହିବ କପରି ଚିର ଦିନ ଏବେ ତାଙ୍କ ବିନା ମୋତେ କହ ।
ମଉନେ ଲଜ୍ଜାରେ ପୋଛିଲେ ବଦନ ତା'ଶୁଣି ଉତ୍ତାପ୍ତା ବାଣୀ,
ପ୍ରଣମି ଭାଷିଲେ ଯାଏ ପତି ପାଶେ ଧରିଥିଲ ଯାର ପାଣି ।
ଏତେ କହି ଖରେ ଚଳିଲେ ଦୁଆରେ ଦୁଃଖ ଶୋକନାହିଁ ଚିତ୍ତେ,
ରାଜଲକ୍ଷ୍ମୀ ରାଜ ପୁରୁ ନିର୍ଗତାକ ଦେଖେ ଦ୍ୱାରେ ଆଚମ୍ବିତେ ।
ଦେଖିଣ ନଥିଲୁ କେବେହେଲେ ଦିନେ ଯାହାଙ୍କୁ ରବି ନୟନେ,
ସାକ୍ଷାତେ ଭବାନୀ ପରାୟେ ଦେଖିଲେ ଦ୍ୱାରେ ତାଙ୍କୁ ସର୍ବଜନେ ।
ଭାବିଲେ ଏକାଳ ହେଲା ବିପରୀତ ରାଜଲକ୍ଷ୍ମୀ ଗଲେ ତେଜି,
କର୍ପା ବସିଥିବା ଝିକଲୀରେ ଆଉ ଯିବାଲୁ ସଙ୍ଗେ ହେଜ ।
ଲକ୍ଷ୍ମୀ ଛଡାହେଲା ଏ ରାଜ୍ୟ ଆଜହୁଁ ଆଉ କାହିଁ ଭଲ ଗତି ?
ସତୀ ଯହିଁ ପୁଣି ବନସ୍ଥ ତିତା କାହାକୁ ବୋଲିବା ସତୀ ।
ସ୍ୱର୍ଗ ଛୁଉଥିଲେ କେଉଁ ଦେଖା ଅବା ଭୋଗି ଏଥି ଶାପଫଳ,
ଦେଖାଇ ଆଦର୍ଶ ପଳାତକେ କବା ଅଷ୍ଟଭୁଜା ଅବିକଳ ।
ଯେପରି ସୁନ୍ଦରୀ ସେପରି ପବିତ୍ର ଚରିତ୍ର ନିର୍ମଳ ମତି,
ନବେ ଦୁଃଖ ନାହିଁ ବଦନ ପ୍ରସନ୍ନ ପତି ସହବାସେ ସତୀ ।
ଖାରଖଣ୍ଡା ତହୁଁ ଅତ୍ୟନ୍ତ ପ୍ରଖର ବୀରାଙ୍ଗନା ମନ କ୍ଷୁଣ୍ଣ,
ଏରୂପ ବୟସେ କେ ଏହା କରିବ ସାହସେ ଏହାଙ୍କ ଭିନ୍ନ ।
ଦେଖୁ ଦେଖୁ ଯାନେ ବସିଲେ ସୁନ୍ଦରୀ ହସ ହସ ପଦ୍ମମୁଖ,
ସତ୍ୱରେ ଆସିଲେ ଜନନୀ ତହିଁ କଷ୍ଟିତ ନୋହି ବିମୁଖ ।
କରଧରି ତାଙ୍କୁ କହିଲେ ବହୁତ, "ନନ୍ଦିଅ ଶାପ ଗୋ ସତ,
ନ ଜାଣିଣ କଲୁ ଯେତେ ଅପରାଧ କ୍ଷମଗୋ ତାହା ନିୟତ ।
ନିୟତି ଜଗତେ ଭୋଗିଣ ସମସ୍ତେ ଗମନ୍ତି ଯେ ଯାହା ପଥେ;
ତୁମ୍ଭରି କରମ ଭୋଗିଲ ତୁମ୍ଭେ ମା ! କହୁଛୁ ଧ୍ରୁବ ଶପଥେ ।

ନକର ସାହସ ନ ତେଜ ଜୀବନ ନ ଯାଅ ସଖି ଗୋ ସଖି,
ଆମ୍ଭର ପ୍ରାର୍ଥନା ଗ୍ରହଣ କର ମା' ନ କର ଅନ୍ୟଥା ମତି ।

ଚହିଲୁ ଗୋ ସଖି ତୁମ ପୂତ ମତି କର ପାଳନ ରାଜ୍ୟରେ,
ତୁମ୍ଭର ବିହୁନେ ଏ ବିଶାଳ ରାଜ୍ୟ ଗୁରୁଭାର ହେବ ଉରେ ।
ଏତେ ଦିନ ସିନା କରମ ଆଦର ପାଇଥିଲୁ ତବେ ଦିକ,
ଦେବତା ଶପଥେ କହୁଅଛୁ ଆମ୍ଭେ କ୍ଷଣିକ ହୁଅ ଶାସକ ।
ନକର ସାହସ ଛାଡି ସହବାସେ ନ ବଳାଅ ମନ ସଖି,
ସତେ ଭୁଲିଯିବ ତେଜି ଖିଳ ସ୍ନେହ ଆମ୍ଭର କଥା ନ ରଖି ?
ଆସ ମା' ଯାନରୁ ହୁଅ ଅବତୀର୍ଣ୍ଣ ବୋଲି ସୁଦର୍ଶଙ୍କ କର,
ଓଟାର ଦିଅନ୍ତେ କୋପେ ଓହ୍ଲାଇଣ ଉଭା ସେ ସୁନ୍ଦରୀ ବର ।
ମହିଷ ମର୍ଦ୍ଦିନୀ ସାକ୍ଷାତେ ପାଟଳ- ନୟନ ବୁଲାଇ ରୋଷେ,
କରି ଅଟ୍ଟହାସ କୋପେ ଭାଷନ୍ତିକ ମନେ ଅଛୁ ସ୍ମୃତି କୋଷେ ?

"ଦେଖୁଛତ ଖଡ୍ଗ-ଲତା ମୋ'ହସ୍ତରେ ପାଶୁ ଦୁଷ୍କର ବେଗେ,
ସ୍ୱଇଚ୍ଛାରେ ପତି ସଙ୍ଗେ ଝାସଦେବି ଓଗାଳ ନାହିଁ ଉଦ୍‌ବେଗେ ।

ପୂଜ୍ୟ ତୁମ୍ଭେ ସିନା ହୋଇଥିଲ ରାଣୀ କରିବ ରାଜ୍ୟ ଶାସନ,
ମୁଁ ତ ନୁହେଁ ରାଣୀ ରାଇଜପାଳନେ ଧିକ୍‌କାରେ ମୁଁ ସିଂହାସନ ।
ଅମର ଭୁବନେ ପତି ସହବାସ କରିବ ଯାଉଛି ଜବେ,
ସଖି ଶିରୋମଣି ତୁମ୍ଭେ ସିନା ମାତା ସୁଖେ ରହିଥାଅ ଭବେ ।
ଏତେକହି ପତିବ୍ରତା ମଥାମଣି ବିଳମ୍ବ ଅସହ୍ୟ ବାରି,
ଯାନେ ବସି ଆଜ୍ଞା ଦେଲେ ବାହାକରେ"ଘଡକେ ଯିବ ସବାରି ।
ନହେଲେ ତୁମ୍ଭର ଗୁଡ଼ ଜୀବନାଶା ହୋଇଗଲଣି ଉଛୁର",
ଏତେ କହି ଦେବୀ ଅଙ୍ଗୁଳି ମୁଦ୍ରିକା ପୁରସ୍କାର ଦେଲେ ଭାର ।
ଯାନ ଧରି ଶୀଘ୍ରେ ଚଳିଲେ ବାହକେ 'ହୋହ''କୋହ'ନାଦକରି,
ପଶୁ ପକ୍ଷୀ କାଠ ବନାଗ୍ନି କରଇ ବଳପିଲେ ସଖି ସ୍ୱର ।

କୋଳାହଳେ ପୂର୍ଣ୍ଣ ରାଜ ଅନ୍ତଃପୁର ଯାଉ ଟିକଲି ନଗର,
କାଳରାତ୍ରି କିବା ଗ୍ରାସି ଦେଉଅଛି ହୋଇଣ ନିର୍ଦ୍ଧ୍ୟାନ୍ତର ।

ଯାନଯିବା ପଥେ କାନ୍ଦେ ବନଦେବୀ ନିଶାଚରୀ ରାବଛନ୍ତି,
ପ୍ରତିକୂଳ ବାୟୁ ବହଇ ପ୍ରଖର ନାଦଶୁଭେ ନଭତଳେ ।
ଗୋଡ଼ାଇ ଅଛନ୍ତି କେତେ ପୁରଜନ ହାହାକାର ଧ୍ୱନି କରି,
ଶୁଭଇ ଗଗନୁ ମଧ୍ୟେ ମଧ୍ୟେ ପଥେ “ସାଧ୍ୱୀ ଆସ ଅବତରି ।

ବିଳମ୍ବ ହେଲେ ମନୋରଥ ଭଙ୍ଗ ଘଟିବ ନିଶ୍ଚେ ସୁନ୍ଦରି !
ବେଗେ ଆସି ଅର୍ଜ ଜଗତେ ସୁଖ୍ୟାତି ଯଶ ରହୁଗୋ ତୁମ୍ଭର ।

ପତି ପାଦ ପଦ୍ମେ ଲୟ ରଖି ସତୀ ଶ୍ରୀହରି କୀର୍ତ୍ତନ ଗାଇ,
ଅନିତ୍ୟ ସଂସାର ଗରଳ ମାତର ବୋଲି ମନେ ମନେ ଧ୍ୟାୟି ।

ଯାନ ବାହକଙ୍କୁ “ଚଳ ହେ ସତ୍ୱରେ କହନ୍ତି ଥରକୁ ଥର,
ଆବେଗେ ଭାଷନ୍ତି ପାଖ ହେଲଣିତ ପାରଳାର ପରିସର ।

ଏମନ୍ତେ ପ୍ରବେଶ ଖେମୁଣ୍ଡି ନଗରେ ପଚାରିଲେ ଯାନବାହେ,
“କେଉଁଠାକୁ ନେବୁ” ଆଜ୍ଞାଦେଲେ ରାଣୀ ‘ନିଅତ ନଗର ଯାଏ’

ଆଜ୍ଞାମାନି ତହୁଁ ରାଜ ସିଂହଦ୍ୱାରେ ଥୋଇଦେଲେ ନେଇଯାନ,
ଶୁଣିଲେ ସୁନ୍ଦରୀ ପୂରିତ ନଗରୀ କରୁଣ କ୍ରନ୍ଦନ ତାନ ।

ମହାଷ୍ଟମୀ ନିଶା ଅଛି ପାଞ୍ଚଦଣ୍ଡ ଯାନୁ ଦେବୀ ଅବତରି,
କୋଷ୍ଠ ବହିର୍ଗତ କାତିଛଡ଼ା ନାଗ ସମ ଖଣ୍ଡା ସ୍କନ୍ଧେ ଧରି ।

ସତ୍ୱରେ ଗମିଲେ ରାଣୀ ଅନ୍ତଃପୁରେ ବାଟ କଢ଼ାନ୍ତି ନଗରୀ,
ଅନ୍ତଃପୁର ଜନେ ଦେଖି ଛନ୍ନ ହେଲେ ଭାବିଲେ ମାଣିକେଶ୍ୱରୀ ।

କ୍ଷଣକ ମଧ୍ୟରେ ତେଜେ ଅନ୍ତଃପୁର ହେଲା ନୀରବ ନିଶ୍ଚଳ,
ଚାହାଁନ୍ତି କି ଆଜ୍ଞା ହେବ ବୋଲି ସର୍ବେ ପାଂଶୁ ମୁଖ-କମଳ ।

---

ଗଡ଼ବଙ୍ଗର ଇଷ୍ଟଦେବୀ — ମାଣିକେଶ୍ୱରୀ

ପଚ୍ଚରିଲେ ଦେବୀ ସହାସ୍ୟ ବଦନେ "କାହିଁ ଅଛନ୍ତି ମୋ ଧବ ?"
ରାଣୀ ପଚରନ୍ତେ ପାଇଲେ ଉତ୍ତର ଶ୍ମଶାନରେ ତାଙ୍କ ଶବ ।
ଶୁଣିବା ମାତ୍ରକେ ଦାସୀ ଜନ ସହ ଚଳିଲେ ଶ୍ମଶାନ ଆଡ଼େ,
ନ ଶୁଣିଲେ କିଛି ନିଷେଧିଲେ ଯେତେ ପଥ ଓଗାଳିଣ ଗାଢ଼େ ।

ପ୍ରବେଶିଲେ ଯାଇ ସେକ୍ଷଣି ଶ୍ମଶାନେ ଦେଖିଲେ ଶବ ସଂସ୍କାର,
ନିର୍ଦ୍ଦେଶିଲେ ଖରେ 'ସଖି ଦାହ ବଧି କର ଭିତରେ ଉପଚାର' ।

ନ ଶୁଣିଲେ ଆଜ୍ଞା ସେ ସଖି ପାବକ କାହା ନିଷେଧ ବାରଣ,
ଓଗାଳିକ ହୁଏ କୁଣ୍ଠା କିଅ କରେ ଧାବିତ ମତ୍ତ ବାରଣ ?

ଆରମ୍ଭିଲେ ସତୀ ଦାହ ବିଧି ତହିଁ ସୁଆଗତ ନିତଙ୍ଗମ,
ଆରୋହୀ ସୁନ୍ଦରୀ ସାକ୍ଷ କରିଥିଲେ ଦିଗପାଳ ସସଂଭ୍ରମ ।
"ପରଲୋକେ ପତି ସଙ୍ଗ ଆଶେ କରେ ଅନୁଗମ ପ୍ରକରଣ,
ଏଥେ କାହା ଦୋଷ ନାହିଁ ଜାଣିଥାଅ ଆହେ ଦିଗପାଳ ଗଣ ।

ପତି ସହବାସେ ମନୋରଥ ସିଦ୍ଧି କରିଦିଅ ମୋହ ପ୍ରଭି,
ଏତେ କହି ସଖି ଚିତା ଅନଳରେ ଡେଇଁ ପଡ଼ିଲେ ଝଟତି ।
କେତେ ହାହାକାର କେତେ ଜୟଧ୍ୱନି ହେଲା କେତେ ସାଧୁବାଦ,
କେତେ ପୁଷ୍ପବୃଷ୍ଟି କେତେ ମନ୍ତ୍ର ପାଠ କେତେ ଅବା ବାଦ୍ୟନାଦ ।

କେତେ ନର ନାରୀ ନେତ୍ର ଲୋତ ଝରେ ବିଷାଦ ହୃଦୟ ଦୁଃଖି,
ଦୁଇ ଦଣ୍ଡ ମଧ୍ୟେ ଭସ୍ମେ ପରିଣତ ଦେଖାଗଲା ଦେହ ଦୁଇ ।
ପତି ପତ୍ନୀ ଦୁହେଁ ନିତ୍ୟ ଲୋକେ ଯାଇ ବିଳସିଲେ ନିତ୍ୟ ସୁଖେ,
ବିରହ ବିଚ୍ଛେଦ ନିମିଷେ ଭୁଲିଲ ଅପୂର୍ବ ,ଶାନ୍ତି ମୟୂଖେ ।

ମନ୍ଦାକିନୀ ତୀରେ ନନ୍ଦନ କାନନେ ହରିଚନ୍ଦନର ମୂଳେ,
କନକ ପ୍ରାଚୀର ରତନ ଭବନେ ବାସକଲେ ଶ୍ରଦ୍ଧା-କୂଳେ ।
ରହେ ନାହିଁ କିଛି ଧନ କି ଯୌବନ ମଣି ମାଣିକ୍ୟ ଆକର,
ପୁତ୍ର ଗୃହ ଦାର ମିତ୍ର ବନ୍ଧୁ ଜନ ନୁହେ ଚିର ଜଗତର ।

କରମର ଫଳେ ଜୀବ ଗତାଗତ ହେଉଥାଏ ଏ ଜଗତେ,
କେ ନୁହେ କାହାର ଋଣାନୁବନ୍ଧନେ କେ ସୁତ, କେ ପିତା ସତେ

ବୃଥା ଅଭିମାନେ ମାତିଣ ଜଗତେ କର ପାପ ସମାଚର,
ଭୋଗଇ ନରକ ବହୁ କାଳଧାଏ ଏ ଦୁର୍ଗତି ଜୀବାଧାର ।

ଅନିତ୍ୟ ସଂସାରେ ରହିବାକୁ ଯିନା କାତ୍ୟଭବେ ଜ୍ଞାନୀଗଣ,
କରନ୍ତି ନରତେ ସୁକର୍ମ ଧରମ ପାନେ ବଓ୍ ଆଚରଣ ।

ପର ଦୁଃଖ ହର ପରମ ସୁନ୍ଦରୀ ମାତୃସମ ଦେଖିମନେ,
ସାଧୁ ସମାଦରେ ସତ ସଙ୍ଗତରେ କାଳ କାଟନ୍ତି ଯତନେ ।

ଏସନ ସତ୍କର୍ମେ- ଯିନା ମର ଲୋକେ ନାମ ହୁଅଇ ଅମର,
ମୃତେ ସ୍ୱର୍ଗଲୋକେ ଦେବ ଶିରୀ ଭୁଞ୍ଜି କରେ ବହାର ଆଦର ।

ହଷ୍ଟ ସତକର୍ମ ସ୍ୱର୍ଗେ ପତ୍ତ ସହ ଧର୍ମ ବଳେ ଜିତେନ୍ଦ୍ରିୟ,
ବଳସିଂଲ ସୁଖେ ଚିରକାଳ ଯାଏଁ ପିଇ ଦୁର୍ଲଭ ଅମିୟ ।

---

## ବସନ୍ତ

ଶିଶିରକୁ ଦୂରକରି            ଋତୁରାଜ ଗଲ ପୂରି
ବିପୁଳ ସମ୍ପତ୍ତି ସହ କ୍ରୀଡ଼ା ଆଚରି,
ସୈନ୍ୟ ସାମନ୍ତ ସଙ୍ଗତେ        ଯଥା ନୃପତି ଜଗତେ
ତଡ଼ି ଦୁର୍ଜନ, ସ୍ୱଜନ ସଙ୍ଗରେ ଧରି ।
ପୁଷ୍ପ ପତାକା ଆଜି ଆଜି        ବୃକ୍ଷି କି ବିରାଜି ସାଜି
ବନ୍ଧୁପଣେ ବଢ଼ାଇଲ ମଧୁ ମାଧୁରୀ,
ରୋମଯୁ ବସନ ବହ୍ନି        ପ୍ରଭୃତି ସାମନ୍ତ ଶ୍ରେଣୀ
ହେଲେ ହେଲେ ଦୂରୀକୃତ ମାଘବ ତରୀ ।
ଶୋଭେ କାମ ନାଗେଶ୍ୱର-        ରଙ୍ଗେ ବିରଚି ବିହାର
ନୃପତି ପଦୁ ଦେହଲ କୁସୁମ ରଜ,
ଅଭିନବ କିଶଳୟ        ଆଦି ପରିବାର ଚୟ
[illegible] ଧାରିଲେ ପାଦପ ବ୍ରଜ ।

ଚ୍ୟୁତପତ୍ର ଲୁଚି ଧୀରେ    ପ୍ରବେଶି ସୂଚୀ ବନରେ
ପ୍ରକାଶିଲ ସଷ୍ଟ ପଣ ମାଧୁର୍ଯ୍ୟ ଆଜ,
ଦୁର୍ଜନ ଜନ ସଙ୍ଗତି    ଦୂରେ ପରିହରି ନିତି
ରହନ୍ତି ଯିନା କୁଶଳେ ସାଧୁ ସମାଜ ।

ଅଭିନବ ପୁଷ୍ପବନ୍ତି    ଗୋଲାପ,କୁନ୍ଦ,ସେବନ୍ତି
ରଚିଲେ ବିହାର ମୋଦ ପ୍ରେମ ଅଗାଧ,
ପ୍ରିୟତମ ବନ୍ଧୁ ଭିତରେ    ବିଲୋକ କେବା ସଂସାରେ
ଆନନ୍ଦ ନରଖେ ମନେ ଚିର ଅବାଧ ।

କିବା ମଧୁ ସେନାପତି    ବେଶରେ ସାଜି ମୂରତି
ହୋଇଅଛି ଆବିର୍ଭୂତ କୁପିତ ଚିତ୍ତେ,
ପୁଷ୍ପମୟ ଧନୁ ଧରି    ଚୂତାଙ୍କୁର ଶରାବଳି
ଚଞ୍ଚରୀକମାଳା-ଗୁଣେ ଯୋଚିଣ ପ୍ରୀତେ ।

ପ୍ରେମିକ ପ୍ରେମିକା ଜନ    ଘେନ ରସ ସିକ୍ତ ମନ
ଅନାୟାସେ କରଇ ସେ ହୃଦ ମନ୍ଥନ,
ଅପରାଧ ସୁବିଚାର    ନଥାଇ ଲେଶ ମାତର
ବିହିବ କିବା ମାନିନୀ ମାନ ଖଣ୍ଡନ ।

ଦେଖି ବସନ୍ତ ଆଗମ    ସୁଖୀ ହୋଇ ଖିଳ ଦ୍ରୁମ
କୁସୁମ କୋରକ ଚୟେ ହେଲେ ମଣ୍ଡିତ,
କାହୁଁ ମିତ ଶସ୍ୟ ସ୍ତୁର    ବୁଝିନ୍ତା ମର୍ଯ୍ୟାଦା ସାର
ବିହ୍ନି ଅମରକ୍ଷ ଗୁଣ ପର୍ଣ୍ଣେ ହେଲା ସ୍ଖଳିତ ।

ଗମ୍ଭୀର ମଳିକାଶୟ    ଦେଖି ବସନ୍ତ ଉଦୟ
ସାଜିଦେଲା ପଦ୍ମ ମରେ ସୁମନଦଳେ,
ମଧୁପ କି ମତ୍ତୁଆଳି    ନଳିନୀର ବେଶେ ଲୋଳି
କହେ ରସପୂର୍ଣ୍ଣ ବାକ୍ୟ ଝଙ୍କାର ଛଳେ ।

କାମିନୀ ଚିତ୍ତ-ଭବନ- ଜନିତ କୁସୁମ ବାଣ
ଦେଲା ସନ୍ତାପ ନିରନ୍ତେ ବନିତା ମନେ,
ଅଗ୍ନି ସମ କୁଳାଙ୍ଗାର ଉପୁଜିଲେ ବଂଶେ ନର
ରଖଇ କି କୁଳ ଆଉ ଏହି ଭୁବନେ ।

ବହିଲା ସୌରଭ ଶୀତ ମନ୍ଦ ମନ୍ଦରେ ମାରୁତ
ବିଶ୍ୱଜନ ମନକଲା ମୋହ ସୁବାସେ,
ଅଷ୍ଟାଙ୍ଗ ଯୋଗେ ନିରତ ବିଷ୍ଣୁ ମନ୍ତ୍ରରେ ଦୀକ୍ଷିତ
ଜନ ଶୁଦ୍ଧ ଚିତ୍ତ ଯଥା ଶ୍ରୀପଦ ଆଶେ ।

ପ୍ରଦୋଷ ହେଲେ କି ହେଲା ରଜନୀ ରମ୍ୟ ହୋଇଲା
ସକଳ ଚିତ୍ତ ରଞ୍ଜକ ଗୁଣ ସମ୍ପଦେ,
ସ୍ୱଭାବେଟି ଗୁଣବନ୍ତ ବାସର ଜନଙ୍କ ହିତ
ନୁହନ୍ତି ରମ୍ୟ କେସନେ ମଧୁ ସଂସଦେ ।

ଯୁବତି ଜନ ଜଘନେ ରତନ ମେଖଳା ଧ୍ୱନେ
ରଜତସୋପାନ ଶୁଚି ବାପିକା ଜଳ,
ଅମୃତ କର କିରଣ କର୍ପୂର ସ୍ୱଚ୍ଛ ବରଣ
ସୌଭାଗ୍ୟ ପୂରିଲେ ନିତି ରମଣୀଦଳ ।

ସହକାର ତରୁବର ମନମଥର କମାର,
ଶର ନିର୍ମାଣିଲେ ଚୂତ ଅଙ୍କୁର ଛଳେ,
କେବଳିବ ତା ସୌଭାଗ୍ୟ ହେଲା ନାରୀପୂଜାଯୋଗ୍ୟ
ବସନ୍ତ ପୂଜନ ବିଧି ତାହାର ତଳେ ।

କୁସୁମ୍ଭ ରାଗେ ରଞ୍ଜିତ ବସନ ଅଙ୍ଗ ଶୋଭିତ
ରମଣୀଙ୍କ ପରିଧାନେ ହେଲେ ମହତ,
ଅଶେଷ ବିଦ୍ୟା ନିପୁଣ ଆଶ୍ରା କରି ନୃପଗଣ
ଲଭେ ଜଗତେ ବିଖ୍ୟାତି ଫଳେ ଯେମନ୍ତ ।

କୁଙ୍କୁମ ରାଗେ ରଞ୍ଜିତ    ଅଂଶୁକ ହୋଇଛି ରକ୍ତ
ଦେହଲ ଶ୍ୟାମା ଉରସରେ ମୁଖ୍ୟାବରଣ,
ସାଧୁ ଜନ ସଙ୍ଗେ ସଙ୍ଗ    ଛଡ଼ାଇ ସର୍ବ ତରଙ୍ଗ
ବଢାଏ ଉନ୍ମତ୍ତ ପନ୍ଥ ମାନବଗଣ ।

ପ୍ରଦୀପ ଦର୍ଶିମା ବାଳା    କନ୍ଦର୍ପ ପୂଜନେ ଭଲ
ସାଜିଲା ବେଶ ବସନ୍ତ କୁସୁମମୟ,
ସ୍ଫୁଟ ନବ କର୍ଣ୍ଣିକାର    କର୍ଣ୍ଣାବତଂସ ରୁଚିର
କାମି ହୃଦେ ଜାତ କରେ ଅନଙ୍ଗଭୟ ।

ନବୀନ ମରନ୍ଦ ମଳ    ସୁନ୍ଦର ଚୂର୍ଣ୍ଣ କୁନ୍ତଳ
ଶୋଭଇ ତହିଁ ଅଶୋକ ପୁଷ୍ପ କି ସୁଖ,
ନୀଳମଣି ସୁଭାଜନେ    ମାଣିକ୍ୟ ସ୍ଥାପିତ ଯେହ୍ନେ
କିବା କାମଠର କାମି ଲୋହିତ ମୁଖ ।

ନବ ପୁଷ୍ପିତା ନଆଳୀ    କୁସୁମ ରଚିତ ମାଳୀ
ଲମ୍ବିତ ହୋଇଛି ବାଳା କଂବୁ ଗଳାରେ
ବିକସିତ ଇନ୍ଦୀବର    ମାଳାମେଖଳା ସୁଂଦର
ଦିଶେ ଶରଯୋଗୁ କାମଧନୁ ପ୍ରକାରେ ।

ବାଳା ଉନ୍ନତ ଉରସ    ବାସ ଚନ୍ଦନେ ସରସ
ତହିଁ ପୁଷ୍ପହାର କେତେ ଅଛି ଯତନେ,
ବଳୟ ଅଂଗଦ ଚୂଡ଼ା    ବସନ୍ତପୁଷ୍ପେ ତୟାର
ବଢ଼ାଏ ଭୁଜବଲ୍ଲୀର କାନ୍ତି ବନ୍ଧନେ ।

ପୀନ ନିତମ୍ବ ଜଘନେ    ଖଞ୍ଜିଛି ବାଳା ନିର୍ଜନେ
ବହୁ ପ୍ରକାର ପ୍ରସୂନ ଆତୁର ମନ,
ତା' ଶୋଭା କେବା ବର୍ଣ୍ଣିତ    କରିବାକୁ ସମରଥ
ଅନଙ୍ଗର ସତେ ସେତ ସାୟୁକାସନ ।

ମାନସୀ ରମ୍ୟ ବଦନ        ସତେ କାଞ୍ଚନ ନଳିନ
ତହିଁ କେତେ ଶନ୍ଦ ଲେଖି ଥିଲ ମୃଦଶ,
ସ୍ୱେଦବିନ୍ଦୁ ରତାନ୍ତରେ     ଧାଡ଼ି ଧାଡ଼ି ହୋଇଝଟେ,
ଝଟିକଲ ମୁଖେ ତାହା ମୁକ୍ତା ଦଶ ।

ଦେଖିପାଶେ ବାଳାମଣି        ଲଜ୍ଜାବଶେ ନତାନନା
ଲୁଚୁଇ ଲୁଚୁଇ କଲ ମଣ ଶିଥିଳ,
ହୋଇଣ କାମେ ଆକୁଳ        ରତିଆବେଶ ଘମାବର
ଆଉଜଇ ଦଇବକ୍ଷେ ଲଜ୍ଜା ସୂର୍ଶାଳ ।

ଘଟିଲା ଦେହ ପାଣ୍ଡୁର        ଜନ୍ମିଲା ଆଳସ୍ୟଭର
ବାରମ୍ବାର ଜୃମ୍ଭାବଶେ ହେଲ ଅଥୟ,
ଅନଙ୍ଗ ଅଙ୍ଗନା ଅଙ୍ଗେ        ବଢାଇଲା ଶୋଭା ରଙ୍ଗେ
ସେ ସୁଷମା ହୋଇଲା କି ମଧୁରମୟ ।

ମଦିର ପାନେ ଅଳସ        ଲୋଳନୟନ ବିଳାସ
ସୁରୁଚିର ଗଣ୍ଡଦେଶ ରମ୍ୟବରର,
ଉନ୍ନତ ଭର କଠିନ        ଗମ୍ଭୀର ମଧ୍ୟ ମୋହନ
ସ୍ଥୂଳ ଘନଜଘନ ହେଲ ସନ୍ତର ।

ଜନ୍ମିଲ କାମ ବିକାର        ମିଥ୍ୟା ନିଦ୍ରାରେ ତତ୍ପର
ଅଳସ ହୋଇଲା ଅଙ୍ଗ ବିଳାସିନୀର,
ବାକ୍ୟ ହେଲ ଥର ଥର        ଅବ୍ୟକ୍ତ ଅତି ମଧୁର
କୁଟିଳ ବିଭ୍ରମ ଭଂଗୀ କଟାକ୍ଷତୀର ।

ତ୍ରିସୁଗନ୍ଧ ଚନ୍ଦନ ରସ        ମୃଗନାଭି କୁଙ୍କୁମାଂଶ
ମିଶାଇଣ କାଳୀୟକେ ରମାରତନେ,
ବକ୍ଷର ବଶୀକରଣ        କାମେ ସରସ ହୋଇଣ
ଲେପିଲେ ସ୍ତନ ମଣ୍ଡଳେ ଅତି ଯତନେ ।

ଶୋଣିତ ପାଟଳ ପତ୍ରି ନାନା ରାଗେ ସୁରଞ୍ଜିତ
କୀଳାଗୁରୁ ଧୂପଧୂମେ ଚରବାସିତ,
ସ୍ନୁହେଙ୍କ ସୁନ୍ଦରି ବସନ ଯୁବ ପୁରୁଷ ମୋହନ
କଲ୍ପି ପରିଧାନ ସୁଖେ ନବ ଯୋଷିତ ।

ସଦକାନ୍ତ ମକରନ୍ଦ- ଆସବ କୋକିଳବୃନ୍ଦ
ପିଇଲେ ହରଷ ମନେ ଆକଣ୍ଠ ଭରି,
ସ୍ୱଭାବେ ସେ ଦ୍ୱିଜବର ଜାଣେ କୌଳିକ ଆଗର
ତେଜନ୍ତା କପାଇଁ ପାନ ଅମୃତ ସରି ।

ଉନ୍ମାଦ ହୋଇଲ ଜାତ ସେବ୍ୟଷଣି ପରଭୃତ-
ଯୁଗଳ ହୋଇଲେ କାମ ରାଗେ ମୋହିତ,
ପରସ୍ପରରେ ଚୁମ୍ବନ- ରସେ ରଚିଲେ କ୍ରୀଡ଼ନ
ଡାଳୁ ଡାଳେ ଡେଇଁ ମୁଗ୍ଧ ରସେ ରଞ୍ଜିତ ।

ଚୂତ ରସେ କଷାୟିତ କଣ୍ଠୁ ଛାଡ଼ିଲେ ପରଭୃତ
ମଧୁର ସଙ୍ଗୀତାମୃତ ପଞ୍ଚମ ତାନେ,
ତେଜି ଶ୍ରବଣ ସମ୍ପୁଟ ରହି ଉଦ୍ୟାନ ନିକଟ
ପ୍ରିୟ ପ୍ରିୟା ଉତ୍ତେଜିତ ସେ ମୁଗ୍ଧ ଗାନେ ।

ମଧୁପ ଯୁବକ କାହିଁ ହୃଷ୍ଟ ଦ୍ରାକ୍ଷାସବ ପିଇ
ଗୃହ୍ଟ କହେ ମଧୁପୀକୁ କେତେ ଭଙ୍ଗିରେ,
ନବମାଳିକା ଶିଖରେ ବସିଣ କାହିଁ ଭ୍ରମରେ
କାମ ଗୀତ ଗାଏ ମତ୍ତ ପ୍ରିୟାସଙ୍ଗରେ ।

ମାନ୍ମିକ ରସାଳ ଦ୍ରୁମ ପଲ୍ଲବ କରେ କୁସୁମ
ଧରି ମନ୍ତ୍ର କରେ ପାଠ ମଧୁପ ସ୍ୱନେ,
ତାଙ୍କୁ ଆସିବା ଦେଖି ଝାଡ଼ଣ କରେ ପରଖି
ଉଚ୍ଚାଟ କରେ କାମୁକ କାମୁକୀ ଜନେ ।

ଅଶୋକ ପାଦପ ବର          କାମର ଅନଳ-ଶର
ପ୍ରବାଳ କୁସୁମେ ବର୍ଣ୍ଣି ଦିଶେ ଲୋହିତେ,
ଦର୍ଶନ ମାତ୍ରେ ପଥିକ          ହୁଏ ହୃଦୟେ ସଶୋକ
ବଳେ କାମୀ କାମିନୀରେ ହରେ ତମ

ଦିଶେ ବାସନ୍ତିକା ଲତା          ମଦାନଳ ଆକୁଳିତା
ପ୍ରମତ୍ତ ମଧୁପଗଣ ମଧୁ ଚୁମ୍ବିତେ,
ତା ଦେଖି କାମୁକୀଗଣ          ଧଇର୍ଯ୍ୟ ହୁଏ ଭଞ୍ଜନ
ମନ୍ତ୍ର ନିର୍ମାଣ ମାନସ କୁଟେହ କଂଷ୍ଟତେ ।

କୁସୁମିତ ସହକାର-          ଶାଖା କଂପନେ ଚତୁର
ଅଳି ମିଥୁନ ରହସ୍ୟ କରି ପ୍ରଚୁର,
ମନ୍ଦ ମନ୍ଦ ସମୀରଣ          ବହି କଲା ଉଚ୍ଚାଟନ
ମିଥୁନ ମନ ସେତେଯେଣୁ ସ୍ନେହ ପ୍ରସାର ।

ସୌଭାଗ୍ୟ ମଦ ବଞ୍ଚିତ          ହେଉଥିଲେ ଲତାବ୍ରାତ
ଉଦ୍ୟାନେ ଦେଖି ତାହାରେ କଳକାଣ୍ଠଳେ,
ଉପହାସେ କୁନ୍ଦଲତା          ନଜାଣି ଗୌରବ କଥା
ଗୁଡ଼ଇ ଉନ୍ନତ ଜନ ପନ୍ଥା ସରଳେ ।

ଶିଥିଳ କାଞ୍ଚନ କାଞ୍ଚି          ଦେଇ ଲଜ୍ଜା ଗନ୍ଧ ମୁଞ୍ଚି
ଏକାବଳୀ ଛୁଟୁ କଣ୍ଠ ଉତ୍କଣ୍ଠାଭରେ,
ପଞ୍ଚଶର ପଞ୍ଚଶରେ          ଅତି ବ୍ୟଥିତ ମନରେ
ନକ୍ଷେପେ ପୁରୁଷେ କୋଣ ଦୃଷ୍ଟି ସତ୍ୱରେ ।

ଉନ୍ମତ୍ତ ଅଳି କୋକିଳ          କର୍ଣ୍ଣିକାର ମହୋତ୍ପଳ
ଆବର ଚୂତ ବକୁଳ ମଧୁଦ୍ରବସ,
ଦେଖାଇ ଅନଙ୍ଗ ରଙ୍ଗ          କରିବେ ସମାଧି ଭଙ୍ଗ
ହେଲା ଯୋଗିଜନଙ୍କର ଏବ୍ରି ମାନସ ।

ଏକେ ମଳୟ ପବନ ଦୂଜେ ପୁଂସ୍କୋକିଳଗାନ
ପୁଷ୍ପିତ ତରୁ ଉଦ୍ୟାନ ନିର୍ମଳ ଶଶୀ,
ସ୍ୱଚ୍ଛ ଗଗନ ମଣ୍ଡଳ ବିମଳ ଅବନୀ ତଳ
ଗଛରୁ କୁସୁମ ଦଳ ପଡ଼ଇ ଖସି ।

---

# ଗ୍ରୀଷ୍ମ

ଗ୍ରୀଷ୍ମ ବିଷଧର ଅତି ଭୟଙ୍କର ଟେକି ଫଣା ପରଚଣ୍ଡ,
ଗରଳ-ଜ୍ୱଳନ ଜ୍ୱାଳା ଉଦ୍‌ଗାରଣ ଆସିଲା ଉଗ୍ର ଉଦ୍‌ଦଣ୍ଡ ।

ହେଲା କବଳିତ ଦକ୍ଷିଣ ମରୁତ ଭଜିଲା କ୍ଷୀଣତା କ୍ରମେ,
ଘୋଟିଲା ରଞ୍ଜନ ପୂର୍ବ ପରି ଦିନ ଆତପ ସଂସର୍ଗୁ ଭ୍ରମେ ।

ଦୁର୍ଜନର ସଙ୍ଗ ସୌଜନ୍ୟ ବିଭଙ୍ଗ କରଇ ଅଦୃଷ୍ଟ ବଳେ,
ସାଧୁତା ନାଶିଣ ଦୁର୍ନାମ ରଟାଇ, ଏମନ ଗ୍ରୀଷମ ଚଳେ ।

ଶି କାଳର ବନ୍ଦ୍ୟ ରବି ହେଲେ ନିନ୍ଦ୍ୟ ତେଜି ନିଜ ସୌମ୍ୟ ଗୁଣ,
ଗ୍ରୀଷ୍ମ ସହବାସେ ତୀବ୍ର ତାପ ବଶେ ହେଲେ ସୂର୍ଯ୍ୟ ରଶ୍ମି ଗୁଣ ।

ରସା ରସ ବାର କଲେ ଅପହାର ନିଜ ମର୍ଯ୍ୟାଦା ନଗଣି,
ସାର୍ କ୍ଷିତିତଳ ହେଲା କ୍ଷୀଣ ଜଳ ଅସହ୍ୟ ହେଲା ଧରଣୀ ।

ଉଦ୍ଭ୍ରାନ୍ତ ମନ୍ମଥ କ୍ରମେ ହେଲା-ଶାନ୍ତ ଦିବଶେ ବାସର ମଳିନ,
କୁସୁମିତ ନମଣି ମାଳିତ ଧରଣୀ ସେହି ଆଜ ଅକୁଳନ ।

କୁମୁଦ କହ୍ଲାର ପଦ୍ମ ଇନ୍ଦୀବର ସମ୍ପଦେ କ୍ଷୀଣ ସରସୀ,
ତଡ଼ାଗ ନିର୍ଜଳ ତେଣୁ ପକ୍ଷୀ କୁଳ ନଶୋଭନ୍ତି ତହିଁ ବସି ।

ଧନ ବିନା କରେ ବଡ଼ ମାନ ନରେ ନିର୍ଦ୍ଧନର ନାହିଁ ସ୍ଥାନ,
ହରାଏ ଗୌରବ ପାଏ ପରାଭବ ସଂସାରେ ଏହା ନିଦାନ ।

ପଲ୍ଲବ ପ୍ରସୂନ ଫଳେ ହୋଇ ହୀନ ନ ଶୋଭଇ ତରୁବର,
ବିମଳିନ ଲତା ଲୁହେ ନିତ୍ୟରତା ସୁବିଶାଳ ଉଦ୍ୟାନର ।

ଜଗତ ବିଶାଳ ଲକ୍ଷ୍ମୀ ହୀନ ହୋଇ ଦୂର ହେଲେ ଧନପତି,
ଖଳ ରାଜା ରାଜ୍ୟ ଯତ୍ନେ କେବା ନିଜେ ରଖି ପାରଇ ସମ୍ପତ୍ତି ।

ପ୍ରଖର ଆଦିତ୍ୟ ସଂସର୍ଗେ ତାପିତ କ୍ଷିତି ହେଲା ରଶ୍ମି ଜାଳ,
ଦୁର୍ଭିକ୍ଷ ଭ୍ରମେ ବାଳକ ଯେସନେ ବ୍ୟର୍ଥକରେ ପଢ଼ା କାଳ ।

ସୁଖ ପରେ ଦୁଃଖ ଦୁଃଖ ପରେ ସୁଖ ହୁଅଇ ଏହା ନିୟମ,
ବସନ୍ତ ବାସର ପରେ ଗ୍ରୀଷ୍ମ କାଳ, ବୋଧ ହୁଅଇ ନିର୍ମମ ।

ବାଟ ଘାଟ ହାଟ ବନ ଗିରି ତଟ ତାପକୁ କଲେ ଉଦ୍‌ଗାର,
ଜୀବ ଜନ୍ତୁ ଗଣ- ଅନ୍ୟୋନ୍ୟ ମିଳନ- ସ୍ୱପ୍ନ ହେଲା ଅଭିସାର ।

ପରାଣ ବିକଳେ ଲୁଚିଲେ ଅଗିଳେ ପ୍ରାଣ ହେଲା ଅବସନ୍ନ,
ପଣ୍ଡିଲେ ବିବାଦ ମର୍ଯ୍ୟାଦା ସମ୍ପଦ ଆଉ ନ ରଖଇ ଜନ ।

ମାରବ ନିଷ୍ଫଳ ଦିବସ ସକଳ ନାହିଁ ମୋଦେ ଗତାଗତ,
ନିଯୁକ୍ତି କବଳେ କେଁଅବା ପଡ଼ିଲେ ରହେ ନୋହିଣ ଆରତ ।

ହୋଇଲା ପ୍ରଶାନ୍ତ- ମଞ୍ଜୁଳ ଦିନାନ୍ତ ମଣ୍ଡିତ ସାନ୍ଧ୍ୟ ଗଗନେ,
ବିଶ୍ୱଦେବୀ ଭାଳ ବିଭିବର୍ଣ୍ଣ ବାଳ ପିନ୍ଧିଛି ରଙ୍ଗ ବସନେ ।

ଗ୍ରହ ତାରା ତାଁର ବିନ୍ଦୁ ଚନ୍ଦନର ନକ୍ଷତ୍ର ଚନ୍ଦନ ପାଟୀ,
କାଳିମା ବଦର- ଘନ ଦୁର୍ବାଙ୍କୁର ଅକ୍ଷତ କୃତ୍ତିକା ଧାଟୀ ।

ଶଶାଙ୍କ ବଦନ, ଅମୃତ ଶୋଭନ- ଚନ୍ଦ୍ରିକା ସୁନ୍ଦର ହାସ,
ଏ ଉତ୍ସବ କ୍ଷଣ ଦେଖିଣ କେଜନ ରହିନାହିଁ ବସି ଘର ।

ଆହ୍ଲାଦ ଜନକ ଅମୃତ ମୟୂଖ କର ଚୌଦିଗେ ପ୍ରସର,
ଦିବା ଅବସନ୍ନ ପ୍ରାଣୀ ଗଣ ପ୍ରାଣ ସିଂଚ ଚଳେ ଗ୍ରୀଷ୍ମ-ତରୀ ।
ପରୋପକାରିଣୀ ଚନ୍ଦ୍ରିକା ସେକ୍ଷଣି ହେଲା ଜଗତେ ଅର୍ଚ୍ଚିତା,
କୃତଜ୍ଞ ପରାଣ ଅପରାଧ ଚିହ୍ନ ଧରଇ ନାହିଁ, ଚର୍ଚ୍ଚିତା ।

ନିଶା ନିଶା ପତି ବସ୍ତ୍ର ଦିବ୍ୟ କାନ୍ତ ହୁଅନ୍ତେ ରମ୍ୟ ମିଳତ,
ପ୍ରେମିକ ପ୍ରେମିକା ବିଲେକ ଚନ୍ଦ୍ରିକା- ଶୁଦ୍ଧାଂଶୀ ପରେ ଭୁରିତ ।
ଅର୍ଚ୍ଚନାର ପାଇଁ ଶରୀର ସଜାଇ ଦେଲେ ଦିବ୍ୟ ବିଭୂଷଣେ,
ଗଳେ ମୁକ୍ତାହାର ସ୍ୱର୍ଣ୍ଣ ଅଳଙ୍କାର ପିନ୍ଧିଲେକ ହରଷଣେ ।

ମାଣ୍ଡଗଲେ ପାତେ ରଜତ ଭାଜନେ ଥାପି ଚରମଳ ମଧୁ,
ଏକ ଲୟେ ତହିଁ, ବୀଣା ଯନ୍ତ୍ର ବାଇଁ ଆରମ୍ଭିଲେ ଗୀତେ ବଧୂ ।
ବିବିଧ ମୂର୍ଚ୍ଛନା ବୀଣାରେ ରଚନା କଲେ ପଞ୍ଚମେ ଆଳାପ,
ଅନାୟାସେ ଫୁସ ହୃଦୟ ସରସ ସାଜିଲେ କେଶ କଳାପ ।

କେବଣ ରମଣୀ ଖଞ୍ଜି ଦିବ୍ୟ ମଣି ସୂକ୍ଷ୍ମ କାଞ୍ଚୁଲି ଭିଡ଼ିଲା,
ପିନ୍ଧି ଚୀନାମ୍ବର ପାଟଳ ସୁନ୍ଦର ମର୍ଦ୍ଦଳ ଯନ୍ତ୍ର ଶୁଜିଲା ।

ରମ୍ୟ ଅଟ୍ଟାଳିକା ଉପରେ ବାଳିକା ଜଳଯନ୍ତ୍ରେ କରି ସ୍ନାନ,
କୁନ୍ତଳ କଳାପ ସୁବାସିତ ଧୂପ- ଧୂମେ ଦେଇ କଲି ଗାନ ।
ଅଳକ୍ତକ ରସେ ଚରଣ ସାରସେ ମଣ୍ଡି ନୂପୁର ଲଗାଇ,
କଳହଂସ ଗତି- ପାଶେ ନିଜପତି ମଧୁର କଣ୍ଠରେ ଗାଇ ।

କାଞ୍ଚନ ମେଖଳା କଟିରେ ବାନ୍ଧିଲା କେଉଁ ପ୍ରେମିକା ରତନ,
ବିପଞ୍ଚୀ ବଜାଇ ପ୍ରିୟା ଧାଇଁ ଧାଇଁ ସରସେ କଲା ଗମନ ।

ତରୁଣୀ ରତନ ଘନ ଯଉବନ ଭରେ ରମଣୀୟ ତନୁ,
ସ୍ୱେଦ ବିନ୍ଦୁ-ମୁକ୍ତା ପୁଞ୍ଜେ ସୁରଞ୍ଜିତା ଦୁଃଖେଦେଲା ଫେଇ ମନୁ ।

ଶୀତଳ ବ୍ୟଜନ ନିର୍ଗତ ପବନ- ପ୍ରବାହେ ପଡ଼ି ପାରୁଶେ,
ଗୀତ ଗାନ କଲା ବଜାଇ ବେହେଲା ବୁଡ଼ିଯାଇ କାମରସେ ।

ଗବାକ୍ଷ ପାଶରେ ଅଟ୍ଟାଳି ଉପରେ ପଡ଼ି ପାଶେ ବସି ରମା,
ତାଙ୍କ ହଲଇ ହାର ଦୋହଲଇ ରସି ରସେ ରସଧାମା ।

ଗେଲଇ ଗେଲଇ ଗୀତ ଗାଇ ଗାଇ ହାସ ଭରିତ ଅଧରେ,
କର୍ପୂର ଚନ୍ଦନ ବୋଳିଲ୍ ବଦନ କାମୁକ ଅପଘନରେ ।

ଆଳସ୍ୟ ବିବଶା ପାଇ ମଧୂନିଶା ଶୋଇଲ୍ ପତି କୋଳରେ,
ତା'ମୁଖ ମାଧୁରୀ ଦେଖି ପ୍ରିୟ ଥିଲା ରସ ବିବଶ ଅନ୍ତରେ ।

ପକ୍ୱ ସହକାର ସୁକଣ୍ଟକ ଫଳ ବାସନାମୟୀ କଦଳୀ,
ସୁଲଭତି ଯହିଁ ନିତିତେ ହୁଅଇ ଦେବ ଭୋଗ୍ୟ ରସାବଳୀ ।

ଚକ୍ରବାକ ଜାତ ଦୋଳଣ ସନ୍ତତ ସ୍ଥଳ ପଙ୍କଜ କାନନେ,
ବିହରନ୍ତି ରଜ- ସ୍ୱର୍ଣ୍ଣଦଣ୍ଡେ ପକ୍ଷ ଶିତଳିବ ହୁଏ ମନେ ।

ପଲ୍ଲବ କନ୍ଦର୍ପେ ବସନ୍ତ ନର୍ମମେ ଶୋଭୁଛି କାହିଁ ଗହନେ,
ହେଲେହେଁ ଦୁର୍ଜନ ହୋଇଲେ ବିପନ୍ନ ସାଧୁତା ଜନମେ ମନେ

ମୃଗ ଯୂଥ ଏବେ ଜଳଭ୍ରମେ ଜବେ ମରୀଚିକା ପ୍ରତି ଧାଇଁ,
ତୃଷାରେ ଆକୁଳ ନଇରାଶ୍ୟ ଚିତ୍ତ ବାହୁଡ଼ି ଆସନ୍ତି କାହିଁ ।

ଆଶାପୂର୍ଣ୍ଣ ଜନ ନ ଜାଇ ସ୍ୱଜ୍ଞାନ ପଡ଼ଇ ଭ୍ରମେ ନିପୂତ,
ତେଣୁ ସାଧୁଜନ ଆଶା ତେଜି ମନେ କରନ୍ତି କାର୍ଯ୍ୟ ସନ୍ତତ ।

ପର୍ବତ କନ୍ଦର ଜନିତ ସମୀର ପଶି କୀଚକ ରନ୍ଧ୍ରରେ,
ଅଲୌକିକ ବଂଶୀ ବାଦ୍ୟ ଯାଏ ରଚି କର୍ମୀର କାନନାନ୍ତରେ ।

ଦାବାନଳ ଜାତ ଦହଇ ବସନ୍ତ ଧାଆନ୍ତି ପ୍ରାଣୀଏ ତାପେ,
ଲୋକେ ଏ ପ୍ରକାରେ ବସନ୍ତ ଅନ୍ତରେ ବତାନ୍ତି ଗ୍ରୀଷ୍ମ ହତାଶେ ।

---

# ବର୍ଷା

ନବୀନ ମେଘମାଳା ଉତ୍ପଳ ବ୍ରଜ,  ଆସେନ୍ତି ଆଗତ ପ୍ରମତ୍ତ ଗଜ,
କ୍ଷଣପ୍ରଭା ବଳଜେ କେତନ ସରି, ହସ୍ତୋକ ନାଦ ତହିଁ ମର୍ଦ୍ଦଳ ପରି ।
ଘନ ଗର୍ଜନ ନୁହେ, ଗଜ ବୃଂହଣ,  ନୁହଇ ଜଳକଣ, ମଦବର୍ଷଣ,
ଗ୍ରୀଷ୍ମ ସନ୍ତପ୍ତ ଜନଙ୍କର ଶରଣ,  ଆସଇ ବସୁଧାରେ ଝିଙ୍ଗି ହର୍ଷଣ ।
କାହିଁ ଜଳଦ ଇନ୍ଦୀବର ସଂହାର,  କାହିଁ ଦଳିତାଞ୍ଜନ ରାଶି ଚୂଡ଼ାକାର,
କାହିଁ ଗର୍ଭିଣୀ ଜନ ଚୂଚୁକ ପରି, ଗଗନେ ରାଜେ ନବଘନ ଉପସରି ।
ଚାତକ ତୃଷାକୁଳ ଚିତ୍ତ-ଅଧୀର,  ଦେଖି ନବ ଜଳଦ ମାଗଇ ନୀର,
ସ୍ୱଭାବେ ଦାତାପଣ ଅଛି ଯାହାର, ନଦେଇ ରହିବଟି ସେ ଦାନଶୁର ।
ଚରଣ ଦେଇଥାନ୍ତି ମହତ ଜନ,  ଶ୍ରାବଣ ଯାଚକଙ୍କ ମହତ୍ତ୍ୱ ମନ,
ଭାବି ଏମନ୍ତ ଜଳଧର ତକ୍ଷଣ,  କାତର ନୋହି ଦେଲା ଜୀବନ ପଣ ।
ଅକ୍ଷୟ ଆଶୟ ସେ ଜଳ-ଭଣ୍ଡାର, କଅଁତଦାନେ କାହିଁ ତାର ବଳ୍ପର,
ଦ୍ୱିଜଯାଚକେ ଦେଖାଇ ସାତ୍ତ୍ୱିକପଣେ, ସନ୍ତୋଷି ଦେଲା ଅମୃତ କଣ କଣ

ସଲିଳ ମହାଭରରେ ଥିଲ ଲମ୍ବିତ, ଗୁଣବନ୍ତ ନରତେ ଯଥା ବିନମିତ,
ବିଦ୍ୟୁତ ଧାରା ବର୍ଷି ମନ୍ଦ୍ର ଗମନ, ଧାରା ବରଷାଗୁଣେ ଧୀର-ଆସନ୍ନ ।

ଶ୍ରବଣ ମନୋହର କରି ନିସ୍ୱନ, ଚଳେ ବଳକାପଂକ୍ତି ମଣ୍ଡି ଗଗନ,
ଶୁଣି ଦର୍ଶନେ କାହିଁ କୋବିଦ ଜନ, ନକହି ପଦେ ଅଧେ ମୌନମଗନ

ବାସବ ଶରାସନ କି ସମାହାର, ନବରତନକାଂନ୍ତି ହୁଏ ବାହାର,
ସଉଦାମିନୀ-ଗୁଣେ ସେ ବିରାଜିତ, ଯୋଗ୍ୟସିନା ଯୋଗ୍ୟରେ ହୁଏଯୋଜିତ

ନବ ରତନ ରୂପେ କନକ ଗୁଣ, ନୋହିଲେ ବିଧିର କି ମହତ ପୁଣ,
ସୁତୀକ୍ଷ୍ଣ ବୃଷ୍ଟି ଧାରା-ଉଗ୍ର-ବିଶିଖ, ଘାତେ ବେଦନା-ନତ ପଥିକ ଶିଖ ।

ବରଷା କାଳ-ଧରାଟଣ୍ଡି ଆଗତେ, ଧରଣୀ ବେଶକେତେ କହିବା ସତେ,
ତୃଣାଙ୍କୁର-ବୈଦୂର୍ଯ୍ୟ ମାଳା ମଣ୍ଡନ, ଧରି ଶୋଭିତ କଲା ସ୍ୱ-ଅପଘନ ।

କନ୍ଦଳି ଦଳ ସତେ ବାସବ ମଣି, କେତେ ପିନ୍ଧିଲା ତାହା ନୁହଇ ଗଣି,
ଇନ୍ଦ୍ରଗୋପ-ଗମନ ମାଣିକ୍ୟଧାର, ତେଣେ ମଣ୍ଡିଲା ନିଜ ଗଳାର ହାର ।

ଦୃଷ୍ଟା କାମିନୀ ମହାନଦୀ ସକଳ, କୋପପ୍ରଭାବେ ବେଗେ ହୋଇପ୍ରବଳ,
ପାର୍ଶ୍ୱଦେଶ ଥିବା ଦ୍ରୁମ ଭାଙ୍ଗିଲେ ସତେ, ଜନ ନିବାସ ଶତସହସ୍ର ଶତେ ।

ନାଶିଲେ ଜୀବଜନ୍ତୁ ନିର୍ଦ୍ଦୟ ଚିତ୍ତେ, ମଳିନ ଜଳ-ବାସ ପିନ୍ଧି ତୁରିତେ,
କୁଟିଳଗତି ଅତି ବିଭ୍ରମ ଭରେ, ଚଳିଲେ ଅମର୍ଯ୍ୟାଦେ ନୀଳସାଗରେ ।

ମୟୂର ମହାନନ୍ଦ ଭରି ମାନସେ, କଳାପ ବିସ୍ତାରିଛି ଅତି ସରସେ,
ବିବିଧ ଚନ୍ଦ୍ରକାଂନ୍ତି ତହିଁରେ ପୁରି, ବଢାଇଅଛି ହେଳେ ରୁଚି ମାଧୁରୀ ।

ଧରିଛନ୍ତି ଅନୁରାଗ ମାନସେ ଭରି, ଷଡ୍ଜ ସ୍ୱରେ ଡାକଇ ଗୀତ ଲହରୀ,
ସେ ଗୀତାମୃତ ତାନ କରଣ ପାନ, ମୟୂରୀ କେକାରବେ କରଇ ଗାନ ।

ପ୍ରିୟା ରୂପ ବନାଶ୍ଲେଷେ ଲଭି ପିରତି, ନୀଳକଣ୍ଠ ଭଜିଲା ନାହିଁ ତୃପତି,
ନୃତ୍ୟ ରସରେ ତହୁଁ ଗଲା ପ୍ରବର୍ତ୍ତି, କେ ବର୍ଣ୍ଣିପାରିବ ତା'ଶୋଭାସମ୍ପତ୍ତି ।

ମଧୁରତର ମୃଦୁ ତୃଣ ଅଙ୍କୁର, ହରିଣ ଦନ୍ତ ଯତ୍ନେ ଛିନ୍ନ ମଧୁର ।
ନବ ପଲ୍ଲବ ଆଭା କଶୋଭା ହସେ, ବନ୍ଧ୍ୟ କାନନ ଦୃଷ୍ଟିରମ୍ୟ ସରସେ ।

କାହିଁ ବାଲୁକାମୟ କାନନ ସ୍ଥଳୀ, କାସାର ସଲୋଭୃନେ ଖେଳାଏ ଅଳି,
ତହିଁ ଜନ ନୟନ ହରଇ ଭ୍ରମେ, ଚକିତ ଷଣେ ଷଣେ ସ୍ୱସ୍ତ ମରମେ ।

ବରଷା ରଜନୀରେ ଜଳଦ ଘନ, ବାରମ୍ବାର କରଇ ଘନ ଗର୍ଜନ,
ନିବିଡ଼ ଅନ୍ଧକାର ଭୀଷଣ ଧ୍ୱନ, ନଦିଶେ ମାର୍ଗ ତହିଁ ଭ୍ରାନ୍ତନୟନ ।

ଜନ ପର୍ବତ ଗିରି ଗ୍ରାମ ସକଳ, ହୋଇଛନ୍ତି ଏକାକାର ପଥ ବିକଳ,
କୃଷ୍ଣାଭିସାରିକା ଏ ତଥାପି କାହିଁ, କ୍ଷଣ ବିଦ୍ୟୁତେ ପଥ ନିରେଖି ଗୃହିଁ ।

ନକରି ମନେ ଭୟ କାମ ବିବଶେ, ଚଳନ୍ତି ପତି ପାଶେ ସ୍ନେହ ପରଶେ,
କି ନକରି ପାରଇ କାମାନ୍ଧ ଜନ, ମହତ୍ତ୍ୱ ମର୍ଯ୍ୟାଦାକୁ ତେଜି ବନ୍ଧନ ।

ଏମନ୍ତ ରଜନୀରେ କାହିଁ ତରୁଣୀ, ଅତି ଭୀଷଣ ଘନ ଗର୍ଜନ ଶୁଣି,
ନକରି ପ୍ରିୟ ଦୋଷ ଲେଶ ଚିନ୍ତନ, ଶଙ୍କିନେ ପତିଦେହେ ହୋନ୍ତି ଲଗନ ।

ପଥିକ ପ୍ରିୟାମାନେ ଏହି ସମୟେ, ତେଜି ମାଲ୍ୟଭୂଷଣ ଶୂନ୍ୟ ଆଶୟେ,
ନୟନ ଇନ୍ଦୀବରୁ ବୁହାଇ ନୀର, ବିମଳିନ କପୋଳ ଆନନ ଶିର ।

ବନ୍ଧିଲେ ଯଉବନ ସୁଖ ସମ୍ପତ୍ତି, ବନ୍ଧିଲେ କୁଳାଙ୍ଗନା କୁଳ ପଦ୍ଧତି,
ବନ୍ଧିଲେ କୁଳଟାଙ୍କ ଆତୁରଗତି, ସୁମରିଲେ କରମ, ରକ୍ଷଣେ ସ୍ଥିତି ।

ନିମ୍ନାଭି ମୁଖେ ଜଳଧାର ବହଇ, ତୃଣକୀଟ ରଜରେ ମୈଳିନ୍ୟ ବହି,
ତାଦେଖି ଭେକ କୁଳ ପନ୍ନଗଭ୍ରମେ, ଭୟେ ଧାଆନ୍ତି ଧାଇଁ ଅତ୍ୟନ୍ତ ଶ୍ରମେ ।

ସହଜେ ପଦ୍ମ ମତ କୁସୁମ ବନ୍ତ, ଭ୍ରମର ଅଭିଳାଷ ନ ଛାଡ଼େ ମତ୍ତ,
ତଥାପି ମୂର୍ଚ୍ଛିତେ ମଧୁପମାନ, କରି ମଧୁରତର ସଙ୍ଗୀତ ଗାନ ।

ଉଦ୍ଦଣ୍ଡ ନୃତ୍ୟ କଳାରତ କଳାପୀ, କଳାପ ଆଛାଦିଲ ଷଡ଼୍‌ଜଆଳାପୀ,
କାହୁଁ ପାଆନ୍ତା ତହୁଁ ଅଭିଷ୍ଟରସ, କାହିଁ ପଦ୍ମ କାହିଁ ପିକ୍କ ନୀରସ ।

ନବ ଜଳଦସ୍ୱନେ ବଳ ବାରଣ, ଉନ୍ନତେ ବାରମ୍ବାର କଲ ବୃଂହଣ,
ଗଣ୍ଡପ୍ରଭ ତା' ମଳ ପଦ୍ମ କ ଶୁଣ୍ଡେ, ତହିଁରେ ଯାଇ ହେଲେ ମଧୁପେ ରୁଣ୍ଡ ।

କୁମୁଦପ୍ରଭା କାହିଁ ଗିରି ପଥର, ଚୌଦିଗେ ବହିଯାଏ ଗୁରୁନିର୍ଝର,
ଶିଖି ଦେଖାଏ ତହିଁ ନର୍ତ୍ତନ କଳା, ଦର୍ଶନେ ଲଗିରହେ ଚକ୍ଷୁ ଚପଳା ।

ସର୍ଜ୍ଜ କଦମ୍ବାର୍ଜ୍ଜୁନ କେତକୀ ବନ, କୁସୁମବୃନ୍ଦରେ ପୂରି ଦଶେ ଶୋଭନ,
ବିନ୍ଦୁ ବରଷାପାତେ ଜଳଦ ତହିଁ, କରି କନକ ପରି ଭୂମି ରଚଇ ।

ମନ୍ଦ ମାରୁତ ତହିଁ କରି ସଞ୍ଚାର, କରଇ ଗଂଧଶୈତ୍ୟ କ ଅପହାର,
ଯହିଁ ମୂଳଭଶିଖା ମୟୂର ସେ ସ୍ଥଳେ, ପରଶନ ବୋଲି କ ନାଚଏ ବଳେ ।

ଲମ୍ବିତ କେଶଗୁଚ୍ଛ କଟି ଉପରେ, ସୁରଭି ପୁଷ୍ପ ଶୋଭେ କର୍ଣ୍ଣେ ସୁନ୍ଦରେ,
ଉରଜ ଯୁଗେ ମୁକ୍ତାହାର କ ଲୋଭ, ଆସବ ମୁଖାମଦ ସ୍ୱସ୍ତାରେ ଶୋଭ ।

ବିଘୂର୍ଣ୍ଣିତ ନୟନ ପ୍ରାନ୍ତ ପାଟଳ, ଗମାଏ ପଡ଼ପାଳି ଧ୍ୱମ୍ନ ବିହ୍ୱଳ,
ଇନ୍ଦ୍ର ରୂପ ତଡ଼ିତେ ଘନ ସୁନ୍ଦର, ଘନ ଜଘନେ କାଂଚୀ ଚୁତରତର ।

ଦେଖି ପଥର ହେଲେ ହେବ ସରସ, ଚେତନ ହୃଦ କେହ୍ନେ ହେବ ନୀରସ,
ପ୍ରବାସିଗଣ ଦେଖି ହେଲେ ମୋହିତ, କାମ କୁସୁମବାଣେ ଅଧୀର ଚିତ୍ତ ।

ସତେ ରମଣୀକାନ୍ତ ବରଷା କାଳ, ମଣ୍ଡି ତନୁ ସକଳ ବିଦ୍ୟୁତମାଳ,
ମଣ୍ଡିଲ କାମିନୀଙ୍କୁ ପ୍ରମୋଦଭରେ, ସ୍ୱଚ୍ଛ ମାଳତୀ ମାଳା ଶିର ଦେଶରେ ।

ଜୁଇ ଜାଇର ମାଳା ମଣ୍ଡିଲି ଉରେ, ଦେଲି ବକୁଳ ମାଳା କଣ୍ଠେ ମଧୁରେ,
କର୍ଣ୍ଣାବତଂସ କଲି ରମ୍ୟ କଦମ୍ବ, ଉତ୍ପଳେ ମଣ୍ଡିଦେଲି ଜଘନାରମ୍ଭ ।

ଉପବନେ ନିରେଖି ଲତା ପୁଷ୍ପିତ, ନୃତ୍ୟ ଶିଖାଇ ତାଙ୍କୁ କଲି ମୋହିତ,
କେତକୀରଜ ଭରେ ହେଲି ବାସିତ, ହୋଇଲି ନୀରଧାର ପରଶେ ଶୀତ ।

ସୁରଭି ସୁଶୀତଳ ମନ୍ଦ ଅନଳ, ପଥିକ ହୃଦକଲି ବ୍ୟଥା ଶିଥିଳ,
କୃଷକ ଜନେ କାର୍ଯ୍ୟ ଯୋଗାଇ ଜବେ, ହୁଳହୁଳି ଶୁଭିଲି ସ୍ତ୍ରୀ କଣ୍ଠରବେ ।

କାମିନୀ ମନୋହର ଗୁଣ ସହିତ, ଦ୍ରୁମ ପାଦପଲତା ସଂପାତ ମିତ,
ବିକାରହୀନ ହୋଇ ଆସେ ଜଗତେ, ରମ୍ୟ ପ୍ରାବୃଟକାଳ ଗ୍ରୀଷମ ଅନ୍ତେ ।

---

## ଶରତ୍

ଶରତ ମୁଗ୍ଧା ନୂବଷ୍ଟ ବରଷାର ଅଂତେ,
ରଙ୍ଗେ ପ୍ରବେଶ ହୋଇଲା ପ୍ରକୃତି ସ୍ୱାଗତେ ।

ବିକଚ ମନୋଜ୍ଞ ପଦ୍ମ ସୁନ୍ଦର ବଦନ,
ପ୍ରଫୁଲ୍ଲିତ କାଶ ହାସ ଅଧର ଶୋଭନ ।

ପରିପକ୍ୱ ଶାଳିଧାନ୍ୟ ଶ୍ୟାମ କଳେବର,
ହଂସ ହଂସକ ବିରାବେ ଲାସ୍ୟ ମନୋହର ।

ପ୍ରକାଶିତ ହେଲା କାଶେ ଧରଣୀ ମଣ୍ଡଳ
ବିରାଜିତ ସୁଧାକରେ ରଜନୀ ସକଳ ।

କଳହଂସ କଳନାଦେ ତଡ଼ାଗ ସକଳ,
ସରୋବରେ ବିକସିତ ରମ୍ୟ ନୀଳୋତ୍ପଳ ।

କୋକନଦ କଇରବ କହ୍ଲାରେ ଶୋଭିତ,
ହ୍ରଦ ପୁଷ୍କରିଣୀ ହେଲେ ସ୍ନିଗ୍ଧ ସୁଷମିତ ।

କୁସୁମିତ ସପ୍ତଚ୍ଛଦେ ସୁନ୍ଦର କାନନ,
ବିବିଧ ପ୍ରସୂନେ ରାଜେ ସାରା ଉପବନ ।

ମାଳତୀ କୁସୁମ କିମ୍ବା ମଲ୍ଲି ଦିଗଂତ,
ଗୋଲାପ ସୁବାସେ କଲା ମୋହିତ ଜଗତ ।

ସ୍ବଚ୍ଛ ସମ ସରିତ ପ୍ରକାଶ ଧାରାରେ,
ହାରପରି ହଂସକୁଳ ମଞ୍ଜୁଳ କାସାରେ ।

ଚଞ୍ଚଳ ଶଫରୀ କିବା ତା' ରମ୍ୟ ରଚନ,
ବିଶାଳ ତୁଳନେ ଧରେଶ ନିତମ୍ବ ଘଟନା ।

ଗେଲଇ ଗେଲଇ କସେ କରେ ମନ୍ଦେ ଗତି,
ଆଳସ୍ୟ ବିବଶା ନଷ୍ଟେ ନାହିଁତ ବିରତି ।

ମୃଣାଳ ରଜତ ଶଙ୍ଖ ସଦୃଶ ଧବଳ,
ଖଣ୍ଡ ଖଣ୍ଡ ମେଘ ବାଟେ ମେଇ ଚଂଚଳ ।

ତାଳେ ସୁନ୍ଦର ରଜତ ଶୋଭି ପ୍ରଭା ଭର,
ଲୁଚେହ୍ନ ସେହ୍ନୁ ମେଘ ଖଣ୍ଡ ଶୁକଳ ଗୁମର ।

ନିର୍ମଳ ଗଗନ ନୃପ ବିଜୟୁ ଭୁବନେ,
ମହୋତ୍ସବ ଚିହ୍ନ ତାହା ଦିଶଇ ଯତନେ ।

ଉଜ୍ଜଳ ଅଂଜନ କାନ୍ତି ଧରନ୍ତି ଗଗନ,
ରମଣୀୟ ଅଟେ ଯେହ୍ନେ ବ୍ରଜେନ୍ଦ୍ର ନନ୍ଦନ ।

ବନ୍ଧୁଳୀ କୁସୁମ ଚୟେ ମହୀ ଅରୁଣିତା,
କୁଙ୍କୁମ ଲେପନେ କିବା ରୁଚିରେ ଶୋଭିତା ।

ପରିପକ୍ୱ ଧାନ୍ୟ କ୍ଷେତ୍ରେ ଯେଣୁସେ ଆବୃତା,
ପିନ୍ଧିଛୁକି ପୀତାମ୍ବର ସରସ ସଂଭୃତା ।

କଞ୍ଚନ କେଡ଼େ ମୟୂର ଦିଶଇ କାନନେ,
ରମ୍ୟ ଶାଖାଗ୍ର କମ୍ପିତ ମଂଥର ପବନେ ।

ବାଳ ପଲ୍ଲବ ଶୋଭଇ ପୁଷ୍ପ ଗୁଚ୍ଛ ତଳ,
ମଧୁପ ବଚରେ ମଧୁ ଧାର ସ୍ପନ୍ଦ ଛଳେ ।

ବାଳା ପ୍ରମଦା ପରାଏ ସୁଶୁରୁ ରଜନୀ,
ଶୋଭ୍ର ନକ୍ଷତ୍ର ଆବଳି ବିଚିତ୍ର ପଟନୀ ।

ଶରଦ ଓଢ଼ଣୀ ମୁକ୍ତ ଶଶାଙ୍କ-ବଦନ,
ବେଷ୍ଟରଣ କରିଅଛି ଚନ୍ଦ୍ରିକା-ବସନ ।

କୃଶ ସ୍ରୋତସ୍ୱିନୀ ହରେ ଦର୍ଶକ ମାନସ,
କାରଣ୍ଡବ ମୁଖେ ଭଗ୍ନ ଯା'ଗାର୍ଟ ସରସ ।

ତୀର କାଦମ୍ବ ସାରସେ ହୁଏ ଆକୁଳିତ,
ହଂସ କହେ ରବଛଳେ ତାହାର ଚରିତ ।

ଅସଙ୍କୁଳ ବନତା ଘଣ୍ଟିକା ଦେଖାଇ,
ରସିକଜନ ମାନସ ଦିଅଇ ମଜ୍ଜାଇ ।

ନୟନ ଉତ୍ସବ କର ମାଳା ମନୋହର,
ବରଷେ ଅମୃତ ବିନ୍ଦୁ ପୂର୍ଣ୍ଣ ସୁଧାକର ।

ବିୟୋଗ ଗରଳ ଲିପ୍ତ ଶରେ କରି କ୍ଷତ,
କହେ ବିରହିଣୀ କୁଳ କୋପେ ପରିଣତ ।

ଅଧୀରର ଯୁବମନ ଧୀର ପବମାନ,
ଫଳଭର ନତଶାଳୀ ଶିଖା କଂପମାନ ।

କୁସୁମ ନମ୍ର ପାଦପେ କଏ ଦୋହଲାଇ,
ବିକଚ ପଙ୍କଜ ମୁଖୀ ପଦ୍ମିନୀ ନଚାଇ ।

ଶଠଜନ ଆଚରଣ ପ୍ରିନା ହେ ଏସନ,
ଲୁଟେ ଲୁଟେ ଧୀର ସତେ ଏମନ୍ଦ ପବନ ।

ପ୍ରାଭାତିକ ବାତେ ଜାତ ବୀଚି ଅଚଂଚଳ,
ଉନ୍ମତ୍ତ ହଂସ-ମିଥୁନ ଚପେ ପରିମଳ ।

ବିଭୂଷିତା ଯେଣୁ ସଦା କମଳ ଉତ୍ପଳେ,
ମାନସ କା'ର ନାହିଁରେ ପୁଷ୍କରିଣୀ ବଳେ ।

ଇନ୍ଦ୍ରଧନୁଁ ଲୁଚାଇଲା ମମତା ଅନଙ୍ଗ,
ତେଜି ଚଞ୍ଚୁଁ ସୌଦାମିନୀ-ବୈଜୟନ୍ତୀ ରଙ୍ଗ ।

ବିଷକଣ୍ଠ ମାଳା ଆଉ ନମଣ୍ଡିଲା ନଭେ,
ମୟୂର ନର୍ତ୍ତନୁ ଶିଖୀ ଛଡ଼ାଇଣ ଜବେ ।

ହଂସ ମଧୁର ସଙ୍ଗୀତ ତାନ ଦେଲା ସ୍ଥାନ,
ମୋହ ହେଲେ ତାହା ଶୁଣି ନରନାରୀ ମାନ ।

କଦମ୍ବ ସର୍ଜ ଅର୍ଜ୍ଜୁନ ସର୍ବସ୍ୱକୁ ନେଇଁ,
ପ୍ରକାଶ କଲା ପ୍ରମୋଦ ସଚ୍ଛନ୍ଦେ ଦେଇ ।

ଶେଫାଳିକା ପଦ୍ମେ ଏବେ ଉପବନ,
ମାଧୁରୀ ବଢିଲା ଯାହା ନୁହେ ତା କଥନ ।

ମତ୍ତ ଶକୁନ୍ତ ନିବହ ତାଳି ଗୀତାମୃତ,
ମନ୍ମଥ ବିହାର ଯୋଗ୍ୟ କଲେ ସମାହୃତ ।

ହରିଣୀଗଣ ନୟନ ତହିଁ ମନୋହର-
ସୁଷମା ବିସ୍ତାର ମୋହ କଲା ନାରୀ ଦଳ ।

ତଦ୍ଧିଗ ଶିରୀ ଧାରୀ ନବ କଣଳୟ,
ତହିଁ ଶୋଭେ ମୁକ୍ତାଧର ହିମବିନ୍ଦୁ ଚୟ ।

ପ୍ରଭାତବାତ ଗ୍ରୈଷ୍ମ ଯେ ଶିରୀ ଶୋଭର,
ବଢାଇଲା ଚିତ୍ତଶ୍ରାନ୍ତ-ସୁଖରେ ଅପାର ।

କେଦାରେ ଶାଳ ସମ୍ପଦ ବିସ୍ତାରିଲା ନେଇଁ,
ଗ୍ରାମ ପ୍ରାନ୍ତେ ଗାଭୀ ମୋଦେ ମେଲା ତୃଣ ଦେଇ ।

ରମ୍ୟ ପଲ୍ଲୀ ପ୍ରାନ୍ତ ଶୋଭେ ସ୍ଥରୁ ସରଜଳ,
ହଂସ ସାରସ ସଙ୍ଗୀତେ ରହିଲା ଚଞ୍ଚଳ ।

ତ୍ରିବୃଷ୍ଟ ହେଲେ ଯେଗୀତ ତାନେ ବଧୂଜନ,
କନ୍ଦର୍ପ କେଳୀରେ ଶ୍ରାନ୍ତ ରମ୍ୟ ଅପଘନ ।

ଉତ୍ସୃତ ବେଶଭୂଷା ବଶେ ଲଜ୍ଜାପାଇ,
ଚଳିଲେ ସେ ଜଳାଶୟେ ଅବଗାହ ପାଇଁ ।

ଦେଖିଲେ ତହିଁ ସୁନ୍ଦରୀ-ଗଣେ କଉତୁକେ,
ରମ୍ୟ ଶୋଭା ଧରି ଜଳା-ଶୟୁ ଅଣ୍ଟୁ ମୂକେ ।

ନିଜଗତ ବୃତ୍ତି କରେ ମରାଳ ସମୂହେ,
ମୁଖଚନ୍ଦ୍ର କାନ୍ତି ଜିଣି ଫୁଲ୍ଲ ସରୋରୁହେ ।

ସୁମଧୁର ଅବଲୋକନ ପରି ନୀଳୋତ୍ପଳ,
କ୍ଷୀଣବଚୀ ମାଳା କି ତା କଟାକ୍ଷ ଚଞ୍ଚଳ ।

ରମ୍ୟ ତୀରେ ପଲ୍ଲବିତା ଶ୍ୟାମାଲତା ଗଣ,
କୁସୁମ ସମ୍ଭେଦେ ଧରିଛନ୍ତି ବିଭୂଷଣ ।

ଅଶୋକ ଗୁଚ୍ଛ ଅଧର ଅତି ମନୋହର,
ମାଳତୀ- ହାସ ଚନ୍ଦ୍ରିକା ଫୁଟେ ନିରନ୍ତର ।

ତନ୍ୱୀଗଣ ଜଳାଶୟୁ ଅପୂର୍ବ ମାଧୁରୀ,
ଅବଲୋକି ଅଭ୍ୟନ୍ତରେ ସୁଖେ ଗଲେ ପୂରି ।

କୁଞ୍ଚିତ କୁଟିଳ ଘନ ନୀଳକେଶଜାଳ,
ପାଶରେ ମଣ୍ଡିଲେ ରାମା ମାଳତୀର ମାଳ ।

ଇନ୍ଦ୍ର ନୀଳମଣି ପାତ୍ରେ ଶୋଭେ କି ଅମୃତ,
ନୀଳାମ୍ବୁରେ କିବା ଉଦେ ଶଶାଙ୍କ ସଂଭୂତ ।

ହୀରକ ମାଣିକ୍ୟମୟ କୁଣ୍ଡଳେ ମଣ୍ଡିତ,
ବାମା କର୍ଣ୍ଣେ ନୀଳୋତ୍ପଳ ଦୁଅଇ ଶୋଭିତ ।

ବକ୍ତ୍ର ପାବକ ସାଂପୂକ ଅନବଦ୍ୟ ପାଶ,
ପଲ୍ଲଗାସ୍ତ୍ର ଧରିଛନ୍ତି ମଦାଳସୀ ହାସ ।

ଚନ୍ଦନ ରସେ ଚର୍ଚ୍ଚିତ ସୁରୁଚିର ନାରୀ,
ଘମାବକ୍ଷେ ହ୍ମାଳଯେ କିବା ଗଙ୍ଗାଧାର ।

ମଧୁର କାଞ୍ଚୀ କଳାପ କସେ ମୋହନାଦ,
ବାମା-ଓଷ୍ଠ ଚୁମ୍ବି ହରେ ସୁଧାଧର ସ୍ୱାଦ ।

ମଧୁର ନାଦ ନୂପୁରେ ସୁଗୁରୁ ଚରଣ
ଯନ୍ତ୍ର ଦୁଏକ ଶୋଭନ ବେରଣୀ ମାରଣ ।

ବିକଶିତ କୁମୁଦିନୀ ନିଳୟେ ଅତୀବ,
ହୋଇ ଶୋଭନ୍ତି ରୁଚିର ରାଜହଂସ ଯୂଥ ।

ଧରନ୍ତି ନିର୍ମଳ ନୀର ମରକତ ଲୋଭ,
ବିମଳ ରଜନୀ ବ୍ୟୋମସ୍ଥ୍ୟା ଲଭେ ଶୋଭା ।

ଶଶାଙ୍କ ନକ୍ଷତ୍ର ମାଳେ ରମ୍ୟ ଜଳାଶୟେ,
ଗଗନ କାହିଁ ବିଭ୍ରମ ଜନ୍ମାଏ ନିଶ୍ଚୟ ।

କୁମୁଦ ଟରଶି ବାୟୁ ବହେ ସୁଶୀତଳ,
ନିର୍ମଳ ଗଗନେ ଚଳ ନାହିଁ ମେଘ ଦଳ ।

ସକଳ ଦିଶ ବିଦିଶ ନୀରଜ ନିର୍ମଳ,
ପଙ୍କିଳର ନୁହଇ ଆଜ ସରୋବର ଜଳ ।

କର୍ଦ୍ଦମ ନାହିଁ ଅୟନେ ସୁନ୍ଦର ଅବନୀ,
ଆହ୍ଲାଦକର ଜ୍ୟୋତ୍ସ୍ନା ମଧୁର ରଜନୀ ।

ନକ୍ଷତ୍ର ରାଜି ବିରାଜେ ବିମଳ କିରଣେ,
ସୁଧାକର ମନୋରମ ନୟରେ ଭୂଷଣେ ।

ଦିନମଣି କରେ ପ୍ରାପ୍ତ ହୁଏ ପ୍ରତିରୋଧ,
ଫୁଟେ ପଦ୍ମ ବରାଙ୍ଗନା ମୁଖ ପ୍ରତି ଯୋଧ ।

କୁମୁଦ ବାନ୍ଧବ ଅସ୍ତ ଦେଖି କୁମୁଦିନୀ,
ବିଲୀନଭାବ ଧରନ୍ତି କ୍ଷଣ ନୀରବିନୀ ।

ଆପଦ ସମୟେ ଧୀର ସ୍ୱଭାବଲମ୍ବନ,
ଜଗତେ ବୋଲଏ ସିନା ଜାଣ ସାଧୁଜନ ।

ପଥିକର ଭ୍ରମ କଥା ନହୁଏ କଥନ,
ଫୁଲୋତ୍ପଳ ଦେଖି କହେ ଏ ପ୍ରିୟା ନୟନ ।

ଶୁଣି ହଂସ ରବ ଭ୍ରମେ ପ୍ରିୟା କାଞ୍ଚୀ ସ୍ୱନେ,
ବନ୍ଧୂକ କୁସୁମେ ରାମା-ଧର କରେ ମନେ ।

ଅନଂଗ ଭୂତ ଆବେଗେ ଯୁବକ ମାନସ,
କେଉଁ ଭ୍ରମେ ନଭ୍ରମଇ ହୋଇଣ ସରସ ।

ସୁଧାମୟୂଖ ମଧୁର ମୁଖ ସୀମନ୍ତିନୀ,
ହଂସରାବ ନବରନ୍ଧ୍ର ଧ୍ୱନିତ ଶିଂଜିନୀ ।

ବନ୍ଧୁଲୀ ସୁଷମ ବଧୂ ଅଧର ପ୍ରବାଳ,
କାହିଁ ବୁଲିଯାଏ ଶିଶୁ ଶାରଦୀୟ କାଳ ।

ଜଗତର ସବୁ କଥା କାଳର ଅଧୀନ,
ସୁଂଦରୀ ସୁଂଦର ଭାବ କାଳ କରେ ଲୀନ ।

ବିକସିତ ଅରବିନ୍ଦ ସୁଂଦର ଆନନ,
ପ୍ରସ୍ଫୁଟିତ—ଇନ୍ଦୀବର ରୁଚିର ନୟନ ।

ବିକଚ କାଶ ବିକାଶ ଧବଳ ଅମ୍ବରା,
ନବ କଇରବ ସମ ସୁନୀଳ ଅମ୍ବରା ।

ମଦୋନ୍ମତ୍ତ ଚକ୍ରେ ଯାର ମଞ୍ଜୁ ମନୋରମା,
ବାହୁଡେ ଅବନୀ କ୍ରୋଡ଼ୁ ଶରତ ସୁଷମା ।

---

## ହେମନ୍ତ

ତୁଷାର ସମୟୁ ନୃପତି ବଜୟୁ
ସମାରୋହ ଦେଖି ଶରତ-ନାରୀ,
କୁଳାଙ୍ଗନା ବ୍ରତ ହୋଇବ ଖଣ୍ଡିତ
ଏଥିଥିଲେ ବୋଲି ଗଲା ବାହାରି ।

ଇନ୍ଦ୍ର ନୀଳମଣି ସୁଷମାକୁ ଜିଣି
ଶୋଭାବନ୍ତ ଧାନ୍ୟ ଶୁକ ସଂହତି,
ପଦ୍ମରାଗ ମୟ ଚଞ୍ଚୁ, ତାହାକାୟୁ
କାହିଁ ଶୋଣପକ୍ଷେ ଖଚିତ ଅଛି ।

ଧରଣୀ ଚରଣେ ପରିତୁଷ୍ଟ ମନେ
ପରିପକ୍ୱ ଶାଳୀ ଗୁଚ୍ଛ ପତନେ,
ଉଡି ଧାଡି ଧାଡି ଗଗନକୁ ମାଡି
ବ୍ୟୋମ ବିମଣ୍ଡିତ କିଂଶୁକ ବନେ ।

ହେମନ୍ତ ବିଜୟ                    ସଂଗୀତ ନିର୍ଘୋଷ-
        ମାନସେ ଗାଆନ୍ତି ମଧୁର ସ୍ୱରେ,
କାହିଁ ବୃକ୍ଷ ତଳେ                    ଶୁଷ୍କ ପତ୍ର ତଳେ
        ପ୍ରେମାଳାପେ ମାତି ଅଛନ୍ତି ଖରେ ।

ଗର୍ଭିଣୀ ଶୁକ-                    ବନିତା ସମ୍ମୁଖ
        ଚଞ୍ଚୁ ପଦ୍ମବାସ-ନିମନ୍ତେ କାହିଁ,
ଶିଶୁଙ୍କ ପୋଷଣ                    ପାଇଁ ବ୍ୟସ୍ତମନ
        ଶୁକଯୁଗ୍ମ ରହି ଅଛନ୍ତି ଗୃହିଁ ।

ହୋଇଲାଣି ଶୁଷ୍କ                    କେଦାରର ପଙ୍କ
        ହେଲା ପରିପକ୍ୱ ଧାନ ସକଳ,
ହେଲା ଶୁଷ୍କ ତରୁ                    ପାତିମାରେ ସ୍ୱଚ୍ଛ
        ଦିଶଇ ଋତୁର ଧବଳ ମଣ୍ଡଳ ।

ନବୀନ ପ୍ରବାଳ                    ଉଦୟେ ମଞ୍ଜୁଳ
        ଦିଶେ ଶସ୍ୟ ରାଶି ମାନସହର,
ହୃଦୟ ବନ୍ଧୁ ବନ୍ଧ                    ଯେତେହେ ଶିଶୁ ଇନ୍ଦୁ
        ଶସ୍ୟ ପ୍ରାନ୍ତେ ଦିଶେ ଅତି ସୁନ୍ଦର ।

ଫୁଟିଅଛି ବନେ                    ଧୂସର ବସନେ
        ଗୁଚ୍ଛା ଗୁଚ୍ଛା ହୋଇ ଲୋଧ୍ର ପ୍ରସୂନେ,
କପୋତୀ କପୋତ                    ଆନନ୍ଦିତ ଚିତ୍ତ
        ଚୁମ୍ବନ ଦିଅନ୍ତି ଚଂଚୁର ମୂଳେ ।

ରଜନୀ ତୁଷାର                    ବରଷି ଅପାର
        ନିଖିଳ ଜୀବଙ୍କୁ ଦେଲା କନ୍ଦନ,
ସ୍ୱଭାବେ ମଳିନ                    ଯା'ଅନ୍ତଃକରଣ
        ପରଉପକାରେ କାହିଁ ତା' ମନ ।

ପ୍ରମୋଦିତ ମନେ ପଙ୍କଜ କାନନେ
ରହିଥିଲେ ସୁଖେ ପଦ୍ମିନୀ ବର୍ଗ,
ହେମନ୍ତ ଭୁବନ ଗରଳ ବର୍ଷଣ
ସମାପନ କଲା ତାହାର ସର୍ଗ ।

ବହୁଳ ଦୁର୍ଜନ ମଧ୍ୟେ କି ସଜ୍ଜନ
ବଞ୍ଚି ରହିପାରେ ବହୁତ କାଳ,
ମାଡିଲେ କଣ୍ଟକ ଉପବନ ବୃକ୍ଷ-
ଶୋଭିକି ବିକଳ ତୃଣପୁ-ଜାଳ ।

ରମ୍ୟ ହିମବିନ୍ଦୁ ଫୁଟେ କୁନ୍ଦ ଇନ୍ଦୁ-
ସଦୃଶ ସୁନ୍ଦର-ମୁକୁତାହାର,
କୁଙ୍କୁମ ରଂଜିତ ହୋଇ ରୂପବନ୍ତ
ଦର୍ଶକ ଜନେ ପିନ୍ଧାଇଛି ହାର ।

ବିଳାସିନୀ ଜନ ଘନ ପୀନସ୍ତନ-
ମଣ୍ଡଳରେ ରହି ହେଲା ଶୋଭିତ,
ବସ୍ତ୍ରାଚଳ ଆଡ଼େ ଜନମନଲୋଭେ
କୁଚ ମଣ୍ଡଳର ବିମୁଗ୍ଧ ଚିତ୍ତ ।

ପୂର୍ବପୁଣ୍ୟ ବଳେ ଜନମିଲେ କୁଳେ
ସୁଗୁଣ ସମ୍ପନ୍ନ ସାର ନନ୍ଦନ,
କୁଳ ଶୋଭାକର ହୁଏ ସେ କୁମାର
ଶୋଭଇ ତା ଯୋଗୁଁ ପୁଣି ନନ୍ଦନ ।

ବିଳାସିନୀ ଗଣେ ଅଙ୍ଗଦ କଙ୍କଣେ
ନଭୂଷିଲେ ଆଉ ଭୁଜ-ବଲ୍ଲୀ
ନିତମ୍ବବିମ୍ବରେ ପୀନ ପୟୋଧରେ
ନମଣ୍ଡିଲେ ସୂକ୍ଷ୍ମ ବାସ ଆବଳି ।

କନକ ରତନ- ଖଚିତ କାଂଚୀଗୁଣ
ନହେଲା ପ୍ରମଦା କଟି ଭୂଷଣ,
ମରାଳିନୀ ସ୍ୱନ- ନୂପୁର ଚରଣ
ପଦ ପଦ୍ମ ହେଲା ଦୂରକରଣ ।

ନିଷ୍ଠୁର ବଚନେ ଅବସ୍ଥା ବଦଳେ
ଚରାଚର ବିଶ୍ୱ ଜୀବ ରାଶିର,
ହୁଅଇ ଅମୃତ ଗରଳ ନିଶ୍ଚିତ
ବିଷ ହୁଏ କାହିଁ ଅମୃତ -କ୍ଷୀର ।

କାର୍ଣ୍ଣୀଷ୍ଠ କରସ ଲୋଚନ ସରସ
ହେଲା ରାମା ରନ୍ଧ୍ର ରମ୍ୟ ଶରୀର,
ଚନ୍ଦ୍ରପତ୍ର ଲେଖ ମୃଦୁଖେ ଶ୍ରୀମୁଖ-
ଶତପତ୍ର ହେଲା ଅତି ରୁଚିର ।

ଦିବ୍ୟ କାଳାଗୁରୁ ଧୂପଧୂମେ ରୂରୁ
ହେଲା ସୁରଭିତ କେଶକଳାପ,
କାମ ମହୋତ୍ସବ ହୃଦେ କଲା ଠାବ
ପତି ସାଥେ କଲା ରାଗ ଆଳାପ ।

ରସାଳ ସରମା ମଣ୍ଡିତା କେ ରାମା
ମାତି ସଖୀ ସଙ୍ଗ ପରିହାସରେ,
ତୁଷାର ସଙ୍ଗତ- ଅଧର ପୀଡ଼ିତ
ହେତୁ ନ ହସିଲା ଅତି ଉଚ୍ଚରେ ।

ଉନ୍ନତ ଉରସ ବଚନ ସରସ
କାମିନୀ କାମୁକ ଯୁଗ୍ମ ମିଳନ,
ଅଦ୍ଭୁତ ସୁଯୋଗ- ଉତ୍ସବ ପ୍ରସଙ୍ଗ-
ପାଇ ପ୍ରପୀଡ଼ିତ ହେଲା ହୈମନ ।

ରଜନୀ ପନ୍ତର ତୃଷାର୍ତ୍ତ ସଞ୍ଚିତ
ତୁଷାର ଶୀକର ଛଳରେ ସର୍ବେ,
ନୟନୁ ସଜଳ ବୁହାଇ ବକଳ-
ହୋଇଣ ରୋଦଇ ଖର୍ବତ ଗବେ ।

ପକ୍ୱ-ଧାନ୍ୟ ଭରେ ସୁନ୍ଦର କେଦାରେ
ବିଚରଣ ସୁଖେ ହରିଣ ଯୂଥ,
ମାତିତା ଭୋଜନେ ଚଞ୍ଚଳ ନୟନେ
କଲେ ଚଉଦିଗେ ଇଷଦୃଷ୍ଟ ।

ହ୍ରଦପରେ ବକେ ବସି ମହା ସୁଖେ
ରହିଛନ୍ତି ମୀନେ ଏକାନ୍ତ ଧ୍ୟାନ,
କାହୁଁ ନୀଳୋତ୍ପଳେ କେଦାର ସଳିଳେ
ବିକଶି ସୌରଭେ ହରନ୍ତି ଜ୍ଞାନ ।

ହେମନ୍ତ ପବନେ ସଦା ବିକମ୍ପନେ
ପ୍ରିୟଙ୍ଗୁ ଧରିଛି ପାଣ୍ଡୁର କାନ୍ତି,
ପ୍ରିୟ ବିରହିଣୀ କୁଳ ବିଳାସିନୀ-
ପ୍ରାୟ ଦେଖାଯାଏ କାହିଁ ବା ଶାନ୍ତି ?

ନବ ପୁଷ୍ପାସବ- ପାନୁ ସଉରଭ-
ମୁଖେ ମୁଖ ଭରି ନାଶି ଚତୁର୍ଯ୍ୟ
ଅନ୍ୟୋନ୍ୟ ଉଚ୍ଛ୍ୱାସେ ଚହଟାଏ ବାସ
ଶୋଇଛନ୍ତି ବଞ୍ଚି ଅଙ୍ଗ ମାଧୁର୍ଯ୍ୟ ।

ରମଣୀ ଅଧର ଦିଶେ ମନୋହର
ଦନ୍ତକ୍ଷତ ବ୍ରଣେ ହୋଇ ଚିହ୍ନିତ,
ଉନ୍ନତ ଉରସ ଶୋଭେ କି ସରସ
ନଖକ୍ଷତ-ଅର୍ଦ୍ଧ ଚନ୍ଦ୍ରେ ଅଙ୍କିତ ।

ଦରପଣ ଧରି କେବଣ ସୁନ୍ଦରୀ
ବାଳାତପେ ବସି ଭୂଷେ ବଦନ,
ସୁରମ୍ୟ ଅଧର- କ୍ଷତ ବାରମ୍ବାର
ଦେଖି ପୁଲକାଏ ସ୍ୱ-ଅପଘନ ।

ଅନ୍ୟ ସୀମନ୍ତିନୀ ନିଜପତି ସେନି
ଯାଇଥିଲା ମାତି ବିହାର ସୁଖେ,
ଯେଣୁ ଅନିଦ୍ରିତା ନେତ୍ରେ ପାଟଳତା
ରହିଥିଲା ତାର ଆଲସ୍ୟମୁଖେ ।

ବାଳାତପେ ବସି ଯାଆନ୍ତେ ସୁକେଶୀ
ରାତ୍ର ଶ୍ରମ ଭରେ ନିଦ୍ରା-ଆବେଶା,
କୁନ୍ତଳ ବନ୍ଧନେ ତର ନାହିଁ କ୍ଷଣେ
ଅଂସ ବିଲମ୍ବିତ କୁଞ୍ଚିତ କେଶା ।

ପୀନ ପୟୋଧର ଆନତ ଶରୀର
କାମିନୀ ମାନସେ ସରସ ମନେ,
ସଉରଭ କଳା- ମ୍ଳାନ ପୁଷ୍ପ ମାଳା
ବାସିବଶୁଁ କେଶୁ ତେଜି ତକ୍ଷଣେ ।

ନବଘନ ନୀଳ ସୁନ୍ଦର କୁନ୍ତଳ
କଙ୍କତିକା କରେ ସାଜି ଚତୁରୀ,
ସୁବାସ ପ୍ରସୂନ ମାଳ ଲଗାଇଣ
ମୁକୁରେ ନିରେଖେ ନିଜ ମାଧୁରୀ ।

କେଉଁ ପ୍ରେମଶୀଳା ଅଧର ମଣ୍ଡିଲା
ରମଣୀପ୍ରୁ ବାସ ଅଳତା ରସେ,
ଚୁମ୍ବନ ନିଟୋଳ ପିନ୍ଧି ସ୍ତନତଳ
ଦେଖି ନଖାଙ୍କିତ ପୂରିଲା ରସେ ।

ଲମ୍ବମାନ ଘନ  ଖଣ୍ଡିତ କୁଂତଳ
ଯେଣୁ ପଡ଼ିଅଛି ପଲକପଟରେ,
କରେ ଆକୁଞ୍ଚନ  ସୁତୀକ୍ଷ୍ଣ ନୟନ-
ଇନ୍ଦୀବର ଦଳ ଅଥୟେ ଥରେ ।

ଆଜିକେ ରମଣୀ  କ୍ରୀଡ଼ା ଶ୍ରମ ହେନ
ହୋଇଥିଲା ଖିନ୍ନ ଅନ୍ତଃପୁରେ,
ସର୍ବ ସଂହନନ  ଶିଥିଳ ବନ୍ଧନ
ତା' ଆଳସ୍ୟ କଳ୍ପ ନୁତ୍ୱ ବାକ୍ୟରେ ।

ସଞ୍ଜାତ ପୁଲକ  କମ୍ପେ ଗୁରୁ ବକ୍ଷ
ହୋଇଣ ସୁନ୍ଦରୀ କର ନଳିନେ,
ସୁବାସିତ ତୈଳ  ଲେପି ଅଙ୍ଗବେଳ
ବଧଜିତ କରେ ତନୁ ମଳିନେ ।

ମନୋହର ମୟୂ  ଶ୍ୟାମ ଦୂର୍ବାଚୟୂ
ନବକଶଳୟୁ ହିମବିନ୍ଦୁରେ,
ଶୋଭାପାଏ ପୁଣି  ବସୁନ୍ଧରା ରାଣୀ
ମୁକ୍ତାମଣି ଯଥା ମଳମ୍ଳିନ୍ଦୁରେ ।

ସୁଗୁଣ ନକର  ଧର ମନୋହର
ଅବଳା ମାନସ ନଅଇ କଣି,
କ୍ରୌଞ୍ଚମାଳାଧର  ସୁଂଦର କେଦାର
ହେମନ୍ତ ଫେରିଲା ପ୍ରକୃତେ ଜିଣି ।

---

# ଶିଶିର

ଧାନ ଆଖୁ ସ୍ତମ୍ଭେ ଶୋଭିତ ଦେଶେ କେଦାରକୂଳ,
ପିନ୍ଧନ୍ତି ଧରଣୀ ରାଣୀ କି ପୀତ ପଟ୍ଟ ଦୁକୂଳ ?

ବକବକୀ ବସି ଉଲ୍ଲାସେ କାହିଁ କରନ୍ତି ରାବ,
ତେଣେ କି ପ୍ରକାଶେ ଅବନୀ ନିଜ ଆନନ୍ଦ ଭାବ ?

ବଢ଼ିଲା ବନିତାଗଣର ପୁଂସ ଜନେ ପୀରତି,
ଶୁକ୍ଳ ପକ୍ଷେ ଶଶି କଳାର ମତ ଗୃଲଇ ରତି ।

ପ୍ରମଦା ପୁରୁଷ ସମାଜେ କଲ ମୃଗୟା କାମ,
ହେମନ୍ତ ଅନ୍ତରେ ଶିଶିର ରଚେ ଧରାରେ ଧାମ ।

ଗବାକ୍ଷ କବାଟ ମୁଦ୍ରିଲେ ଗାତେ ଯେ ଯାହା ଘରେ,
ଗନ୍ଧବହ-ରେଣୁର ପ୍ରବେଶ ଶଙ୍କା କରି ମନରେ ।

କରମାଳ କର ସେବନେ ହେଲେ ସର୍ବେ ତତ୍ପର,
ଶୀତ ଉତପାତ ତେଣେ କଲନାହିଁ ଅନ୍ତର ।

ହସନ୍ତ ପାବକ ସମୀପେ ଶୀତେ ହସନ୍ତି କେହି,
ବଳବନ୍ତ ଦେଖି ଦୁର୍ବଳ ରହେ ଚରଣେ ଦେହି ।

ରୋମୀୟ ବସନ ଅଙ୍ଗାଳ ବାସ ଯୁବତୀ ଜନ,
ନିରତେ ପୁରୁଷଗଣର ସେବ୍ୟ ବକଲ ମନ ।

ନବକଳ ଆଉ ମାନସ ଲେପିବାରେ ଚନ୍ଦନ,
ଯେସନ ଗ୍ରୀଷମ ଋତୁରେ ରବି ବହ୍ନି ସେବନ ।

ଅମୃତ କରର ଅମୃତ କର ନଲଗେ ସୁଖ,
ପଣ୍ଡିତ ସମାଜ ଦେଖିକି ତୃପ୍ତ କେବେ ମୂରୁଖ ।

ତୁଷାର ଶୀତଳ ପବନ ଜନେ ମଣିଲେ ବିଷ,
ଶୁଷ୍କ ହୋଇ ଗଲ କମଳ, ନାଳେ ନାହିଁତ ବିଷ ।

ଚନ୍ଦ୍ର ଗୃନ୍ଧାମରେ ବିହାର ତେଜି ଦେଲେ ମାନବ,
କଣ୍ଟକିତ ବନ୍ୟ ଅପୂନ ପ୍ରାପ୍ତ ନପୁତ୍ତି ବସ୍ତୁ ।

ଶିଶିର ରଜନୀ ଜଗତେ ନୁହେ ସହ୍ୟ କାହାର,
ହିମ ଶିଳାଚୟ ପତନୁ କେବା ହୁଏ ବାହାର ।

ଦୁର୍ଦ୍ଦାନ୍ତ କୁଟୁମ୍ବ ଜନଙ୍କ କଟୂତର ବଚନ,
କରିପାରେ ସହ୍ୟ ଏମନ୍ତ ଅଛି କେବଣ ଜନ ।

ଶଶଧର ଶୀତ କରଣେ ପଥ ଶୀତଳତମ,
ତହିଁ ସାଧ ସୁର କନ୍ନର ମଧ ଲଭନ୍ତି ଶ୍ରମ ।

ମଳିନ ନକ୍ଷତ୍ର ନକର ନୁହେ ନଭ ଭୂଷଣ,
ମୂରୁଖର ଯେଣୁ ଅଟଇ ଆଡ଼ମ୍ବର ଦୂଷଣ ।

ସାଜନ୍ତି ଶୟନ ନିଳୟେ ତହିଁ ନାଗରୀ ଜନେ,
କୃଷ୍ଣାଗୁରୁ ଧୂପ ଧୂମରେ ସୁବାସିତ ସଦନେ ।

ଅଷ୍ଟାଙ୍ଗ ଯୋଗିଏ ଦେଖିଲେ କରିପାରନ୍ତି ଲୋଭ,
ବଶହେବେ ଶିବ ହେଲେହେଁ ଦେଖି ସଦନ ଶୋଭା ।

ଅତି ସେବାପାଇଁ ତହିଁରେ ରଖିଥାନ୍ତି ଯତନେ,
ତଇଲ ଚପଟ ସଲିଳ ଅତି ପ୍ରମୋଦ ମନେ ।

ଯେଣୁ ଦ୍ୱାରଦ୍ୱାର ବିଧାତା ତହିଁ ଅଧିକ ପୂଜ୍ୟ,
ଅତି ସେ ଦେବତା ପ୍ରାଣର, ହେଲି ବାଞ୍ଛିତ ସୂର୍ଯ୍ୟ ।

ସୁବାସ ତାମ୍ବୁଳ ଗଣିକା ଦ୍ରବ୍ୟ ପୁଷ୍ପ ମାଳିକା,
ସମ୍ଭୋଗ ସାମଗ୍ରୀ ହେଥେ ନାନା ଜାତି ଜାତିକା ।

ରମ୍ଭା ତିଳୋତ୍ତମା ଉର୍ବଶୀ ମୁଖ ଅପ୍ସର ସାର,
ସର୍ବ ଭୋଗ୍ୟ ବସ୍ତୁ ସମ୍ପନ୍ନ ଯଥା ଶୟନାଗାର ।

ସୁଖମୟ ମଧୁ ପାନରେ ପରିମଳ ପୂରଣ,
ବଦନାରବିନ୍ଦେ ରାଜନ୍ତି ତହିଁ ନାଗରୀଗଣ ।

ସୁରଲୋକ ଭୋଗ ଅଦୃଷ୍ଟ ବଶବର୍ତ୍ତୀ ପୁରୁଷ-
ବିଳସିବା ଯୋଗ୍ୟ ଯୁବତୀ ଜନ ହୁଅନ୍ତି ଭୂଷ ।

ଅପରାଧ୍ୟ ପ୍ରିୟ ବାନ୍ଧବ ଦେଖାଯାନ୍ତେ ପୂରତେ,
ତର୍ଜିତ ଭର୍ତ୍ସିତ ହୋଇଲେ ଯଥା ଭୃତ୍ୟଙ୍କ ସତେ ।

ଅଶ୍ୱତ୍ଥ ପତ୍ରର ଆକାର କର୍ମେ ଦେହ କାହାର,
ବ୍ୟାଧିଲକ୍ଷ୍ୟ ମୃଗ ସଦୃଶ ଲୁପ୍ତ ବିବେକ ବାର ।

ତଥାପି ମଦନ ଆବେଶେ ରତିରଙ୍ଗ ଲାଳସେ,
ଅତି ଅପରାଧ ବିସ୍ମରି ହୋଇଲେ ହୃଷ୍ଟ ମାନସେ ।

ରତି କାମେ ଯେଣୁ ମନ୍ମଥ ଜାଗେ ଚିତ୍ତ-ଗହନେ,
ଯେଣୁ ସେ ସୁରତି କାମୁକା, ଅନଙ୍ଗର ଅଧୀନେ ।

ପ୍ରମତ୍ତ ମଦନେ ଉନ୍ମତ୍ତ-ତମ ଯୁବକ ଜନେ,
ଯାବତ ସୁଖାର୍ଦ୍ଧ ରଜନୀ ନିଦ୍ରା ନାହିଁ ନୟନେ ।

ସରସ ଭାବରେ ପ୍ରେୟସୀ ସହ ଗାଢ଼ ମିଳନ,
ଶର୍ବରୀ ଶେଷରେ ସେ ସୁଖ ହୋଇଯାଏ ଭଞ୍ଜନ ।

ରମାଗଣ ଶ୍ରମ ଭରରେ କର୍ମମାନ ଉରସେ,
ପ୍ରାତ୍ୟହିକ ଗୃହକାର୍ଯ୍ୟକୁ ନପାରଣ ଅଳସେ ।

ଧୀରେ ଧୀରେ କର ଭ୍ରମଣ କଲେ କାର୍ଯ୍ୟ ଛଳମ୍ଭେ
ପତନ କାରଣ ନୁହେଁକ ଅଭ୍ୟାସକ୍ତି ଆରମ୍ଭେ ।

ଭଙ୍ଗନ୍ତ ସୁଦୃଢ଼େ କାଞ୍ଚୁଲି ଉରସ୍ଥଳେ ବାମାଏ,
କାମୁକୀ କାମୁକ କଣ୍ଠକୁ ଭିଡ଼ିଲକ ପତ୍ରାସ୍ୟେ ।

ରଞ୍ଜିତ କୌଶେୟ ବସନ ରାମା ପିନ୍ଧନ୍ତ ରସେ,
ନାଗର ନୟନ ଖଞ୍ଜନ ଦୃଢ଼ କଞ୍ଜା ବୟସେ ।

ରମ୍ୟ କେଶପାଶେ କୁସୁମ ମାଲ୍ୟ କ ଶୋଭା ପାଏ,
ରାହୁର ମୁଖରେ ଶଶାଙ୍କ-ଅର୍ଧ ଭାଗ ପଡ଼ିଯାଏ ।

ହୁଅଇ ଶିଶିର ଭୂଷଣସାର ନାରୀ ଜନର,
ରସଙ୍କ ପରାଣ ବାନ୍ଧବ, ଦେବ ସଞ୍ଚରରର ।

ଯୁବତୀଙ୍କ ଉଚ୍ଚ ଉରସ ତୁଙ୍ଗ ଘଂଟ ମନ୍ଦର,
ରାଗାମୃତେ ପୂର୍ଣ୍ଣ, କୁଙ୍କୁମ ରସେ ଲିପ୍ତ ଅନ୍ତର ।

ପୀୟୂଷ ଭରିତ କନକ-ମୟ କସେ କଳଶ,
ନୋହିଲେ ସେହିବ କଳପ ଲତାଫଳ ସରସ ।

ନବୀନ ତାରୁଣ୍ୟ ସମ୍ପଦେ ଭୂଷ୍ଣ ତନୁ ସଂଭାର,
କାମୁକ ଯୁବକ ଜନଙ୍କ ଚିନ୍ତାମଣି ପ୍ରକାର ।

ସେ ମୃଦୁ ନାରୀର ପରଶେ କହି ନୁହଇ ସୁଖ,
ଯେସନ ପଥିକ ଦେଖନ୍ତେ ସଞ୍ଜ ପଙ୍କଜ ମୁଖ ।

ଯେବା ଆଲିଙ୍ଗନ ବାହୁଲ୍ୟ ଜାଣିମାରେ ବଦ୍ଧବୃଦ୍ଧି,
ପ୍ରସନ୍ନ କରନପାରେ କ ସେପରାଣ ଦେବତା ।

ଏମନ୍ତ ବିଳାସବତୀଙ୍କୁ ନିଜ ବକ୍ଷ ଉପରେ,
ଶୁଆଇ କାମୁକ ଶୁଅନ୍ତି ସୁଖେ ଶୀତ ରାତ୍ରରେ ।

ଉତ୍ପଳ ବାସିତ ମନ୍ଦର ଶୀତ ବେଦନା ହାର,
ରସିକ ଯୁବକ ନୟନେ ବାରଙ୍ଗନା ପ୍ରକାର ।

ସୁବାସିତ ଶ୍ୱାସ ପ୍ରଶ୍ୱାସ ମୋଦେ କାମୁକ ଜନ,
ବାତ୍ସ୍ୟାୟନ ଶାସ୍ତ୍ର କଥିତ ଯଥା ରତି ବନ୍ଧନ ।

ସ୍ୱର୍ଣ୍ଣମୟ ପାନ ପାତ୍ରରେ ଭରି ଦ୍ରବ୍ୟ ଆସବ,
ମୁଖାମୋଦ ନୀଳୋତ୍ପଳରେ ସମୋହିତ ସରବ ।

କାମୁକ କାମିନୀ ଉଭୟେ ବସି ଏକ ଆସନେ,
ମାତନ୍ତି ଶିଶିର ନିଶାରେ ସୁରା ପାନେ ଗହନେ ।

କ୍ଷଣକେ ଉନ୍ମତ୍ତ ହୋଇଣ ପରସ୍ପର ବଦନେ,
ପିଅନ୍ତି ଗଣ୍ଡୂଷ-ପୀୟୂଷ କୁତୂହଳ ସଦନେ ।

ହୋଇଯାନ୍ତି କ୍ରମେ ପ୍ରସନ୍ନ ରତି ଆଉ ମଦନ,
କେଳ୍ପୁଁ କେଳ କ୍ରୀଡ଼ା କୌତୁକ ରସ ହୁଏ ବର୍ଦ୍ଧନ ।

ପତି ସହବାସୁ ନିଶାରେ ଅନୁରାଗର ବେଦ,
ଅପଗତ ହେତୁ ସୁନ୍ଦରୀ ଯେଣୁ ଲଭିଛୁ ଖେଦ ।

ପବିତ୍ର ମଙ୍ଗଳ କାରକ ଗୁରୁକୁଳ ବାସରେ,
ଆକ୍ଷେପ ଗ୍ଳଜନ ଅଙ୍ଗନା ରହେ ଅଟ୍ଟହାସରେ ।

ରମଣର ଗାଢ଼ ଆଶ୍ଳେଷେ ଅତିଶୟେ ପୀଡ଼ିତ,
ଉନ୍ନତ ଉରସେ ଚୂଚୁକ ଶୋଭା ନୁହେ କଥିତ ।

କ୍ୱାଥୀକୃତ ପଥ୍ୟ ମାଧୁର୍ଯ୍ୟ ଯୁକ୍ତ ମାଧ୍ୱୀକ ବତ,
କଅବା ସୁନ୍ଦର, ସୁପକ୍ୱ ସାଧୁ କ୍ଷୀରିକା ସତ ।

ପ୍ରିୟତମ ଭୁକ୍ତ ଶରୀରୁ କସେ ଶିରୀଷ ନାମ,
ପ୍ରଭାତେ ଅଳସେ ତଳଇ ତେଜି ଶୟନ ଧାମ ।

ଖସିଛୁ କୁସୁମ ମାଳିକା ରମ୍ୟ କୁନ୍ତଳ ପାଶୁ,
ଖସିଛୁ ସତଡିକ ବିଦ୍ୟୁତ ନବ ଜଳଦ ହାସୁ ।

କେଶପାଶ ଫିଟି ଲୋଟିଛି ଗନ୍ଧ ଧୂପେ ବାସିତ,
ଶର୍ଣ୍ଣପଶିଣ ରନ୍ଧ୍ରସ୍ଥ ତମ ଅତି ଗୁମ୍ଫିତ ।

ଧରିଅଛି ବାମ କରରେ ବାମା କୁଞ୍ଚିତ କେଶ,
ଗାଢ଼ା ଭିନ୍ନାଞ୍ଜନ ସଦୃଶ ସୁନିବିଡ଼ ଆଶ୍ଳେଷ ।

ଫିଟିଅଛି ପିନ୍ଧା ବସନ ଦିଶେ ନିତମ୍ବଲେଶ,
ଦିଶେ ନିମ୍ନ ନାଭି ମଣ୍ଡଳ କୌତୁକ ରସ ବେଶ ।

ଏକଟେସେ ପରିତ୍ୟକ୍ତ ସେତ ଅନଙ୍ଗ ରଥ,
ତା ଗହ୍ୱର ଗର୍ଭେ ବସିଛି ରତି ଛେଦଇ ପଥ ।

ଏମନ୍ତ କେବଣ କାମିନୀ ପ୍ରାତେ ଉଠି ବାହାର,
ଲଜ୍ଜାନମ୍ର ମୁଖୀ ତେଜଇ ମଧୁ ଶୟନାଗାର ।

ବସିଛନ୍ତି ଗୃହେ ବାମାଏ ଭାଙ୍ଗିବାକୁ ଅଳସ,
ହୁଅଇ ମାନସେ, ଭବନ ଲକ୍ଷ୍ମୀକି ଏ ହରଷ ।

ସୁବାସିତ ଜଳେ କ୍ଷାଳନ କରି ମୁଖ ମଳିନ,
ହୃଷ୍ଟିତ ହୁଅଇ ଦେଖିଲେ ଗୃମୀକର ନଳିନ ।

କର୍ଣ୍ଣତଟେ ହୁଏ ଘୂର୍ଣ୍ଣିତ ରକ୍ତପ୍ରାନ୍ତ ନୟନ,
ରମା କହେ ଦୀର୍ଘ ନିଶାରେ ନାହିଁ ନିଦ୍ରା ଶୟନ ।

ଫିଟି ଲୋଟେ ବେନି ସ୍କନ୍ଧରେ ରମ୍ୟ କେଶକଳାପ,
ଲକ୍ଷେ କି ନିଶିରେ ରମାର ମାର କେଳି ଅମାପ ।

ନିଶାର ସୁରତ ଶ୍ରମରେ ପୃଥୁ ନିତମ୍ବ ଭର,
ଉନ୍ନତ ଉରସ ପୀଡ଼ିତ, କଟି ଆନତ ତାର ।

କୁବେରଜ ଭୁକ୍ତା ବଶିଷ୍ଟ ରମ୍ଭାପରି ସ୍ନିଗଧ,
ବିଶ୍ୱାମିତ୍ର ଭୋଗ୍ୟା ମେନକା ବତ ଦିଶେ ମୁଗଧ ।

ସୁମନ୍ଥର ଗତି ପ୍ରକାଶେ ରମଣୀର ଆଳସ୍ୟ,
ଶୋଭଇ ଗର୍ଭିଣୀ ମରାଳ ତନ୍ୱୀ ନିଭ ଅବଶ୍ୟ ।

ତୁଷର କୁସୁମ ସ୍ତବକ ହୋଇ ସୌମ୍ୟ ନ୍ୟସ୍ତ,
ଲଜ୍ଜାଭରେ ସ୍ପର୍ଶ କରୁଛି ଯେଣୁ ମୁଗ୍ଧ ଆସକ୍ତ ।
ତରୁଭରେ ସେହି ବେଶକୁ ତେଜ କାମିନୀବତ୍,
ସରଳ ବିଶୁଦ୍ଧ ନେପଥ୍ୟ ସାଜୁଛି କଳେବର ।
କାମୁକ କରରେ ଚର୍ଚ୍ଚିତ ବକ୍ଷୋରୁହ ମଧୁର,
ଅଙ୍କିତ ଗିରୀଶ ଲିଙ୍ଗରେ କଲା କିବା ଇନ୍ଦୁର ।
ଥରେ ଥରେ କରି ଦର୍ଶନ ଲୁଚୁଅଛି ବସନେ,
ସଜନୀର ପ୍ରଶ୍ନେ କହିବ କସ ଭାବଇ ମନେ ।

ଆତୁରେ କାମୁକ ଚୁମ୍ବନ ବଳେ ଓଷ୍ଠ ଖଣ୍ଡିତ,
ସୁନ୍ଦରୀ ଅଧର-ପଲ୍ଲବ ବିତାନରେ ଶୋଭିତ ।
ଶୁକଭରେ ପକ୍ୱ ବିମ୍ବକ ଦଶେ କ୍ଷତ ବିକ୍ଷତ,
ପ୍ରବାଳ କି ରମ୍ୟ ଆଘାତେ ହୋଇଛି ବ୍ୟସ୍ତବ୍ୟସ୍ତ ।

ତୁଷାର ଶୀତଳ କରରେ ସେହି କ୍ଷତ ପରଶି,
ଲୁଚୁଅଛି ପରଦୃଷ୍ଟିରୁ ଉଚ୍ଚ କୁଚ ଉରସୀ ।
ନିଶାର ସମ୍ଭୋଗ ସମ୍ବାଦ ବାରମ୍ବାର ସ୍ମରଣ-
କାରଣ ନବୀନା ଯୁବତୀ ହୁଏ ମୋଦେ ଶରଣ ।
ବ୍ରୀଡ଼ାଭରେ ବ୍ୟସ୍ତ ସିନ୍ଦୂର ବିନ୍ଦୁ ଅଞ୍ଜନ ରେଖା,
ପୋଛୁଣି ପ୍ରଭାତେ ବଦନ ପଙ୍କଜ ରୁଚିର ଦେଖା ।
ଯେବେ ଜନମଇଁ କନ୍ଦର୍ପ ରତିକେଳି ପ୍ରବର,
ଯେବେ ମିଳେ ଖଣ୍ଡ, ସୁସ୍ୱାଦ ଗୁଡ଼, ଆଖୁ, ଶାକର ।
ସଂଯୋଗି ଜନର ଅପାର ମୋଦଭର ଦାୟକ,
ବିଯୋଗି ଜନର ବହ୍ନିଳ-ତର ତାପ କାରକ ।
ଧନିକ ଆନନ୍ଦ ବର୍ଦ୍ଧକ ଦୀନ ସନ୍ତାପ କର,
ଜଗତେ ଶିଶିର ଆସିଣ ହରେ ବ୍ୟଥା ମନର ।

---

# ପ୍ରିୟା-ପ୍ରବାସ

ପ୍ରିୟାଗୋ ରହିଲ ତମେ
କାହିଁପାଇ ସୁଦୂର ପ୍ରବାସେ,
ଖେଦନଦୀ କୂଳେ କୂଳେ
ପ୍ରାଣ ମୋର ବତଇ ହତାଶେ ।

ପଲ୍ଲବିତ ଦ୍ରୁମ ତଳେ
ସଂଗୋପନେ ନିର୍ମାଣି ଗୋ ନୀଡ଼;
କମନୀୟ ପଣାଳସ୍ୱେ
ଜୀବନ ମୋ ବ୍ୟଥା ଭରେ ପୀଡ଼ ।

କେଉଁ ଅପରାଧେ ମୋତେ
ଶାସ୍ତି ଦିଅ ଛଟପଟ ପ୍ରାଣ,
ଏ ଜଗତେ ତୁମ ବିନା
କେହିନାହିଁ ମୋର ପରିତ୍ରାଣ ।

ପ୍ରଣୟ ଆରଂଭେ ଶଙ୍ଖ
ବାଜଥିଲା ଆକର୍ଷଣ ସ୍ୱନେ,
କଳ୍ପନା ଲହରୀ ମାଳା
କ୍ରୀଡ଼ା ରଚୁଥିଲା ବେନି ମନେ ।

ଶୁଭ ଶଙ୍ଖ ନାଦ ସହ
ଶେହନାୟୀ ବାଜଥିଲା ମିଶି,
ଆମ ପ୍ରଣୟର ସାକ୍ଷୀ
ଏ ଧରାର ମନ ଭରଉଛି ।

ହୃଦୟେ ହୃଦୟୁ ଛନ୍ଦି
ପରସ୍ପରେ ପାଇଥିଲୁ ଭଲ,
ଦୁର୍ବିସହ ଏ ବିରହ
ବ୍ୟବଧାନ ଅତି କଳବଳ ।

ପରସ୍ପର ବିନା କେହି
ଜାଣେ କିଏ ଜୀବନସ୍ୟ ମୂଲ୍ୟ ?
ତମେ ଯଦି କୁମୁଦିନୀ
ମୁହିଁ ପ୍ରିୟା ସୁଧାକର ତୁଲ୍ୟ ।

ଆସେ ନାହିଁ ହସ୍ତଲିପି
ରହିଁ ରହିଁ ଅସ୍ତ ହୁଏ ସୂର୍ଯ୍ୟ,
ବୃକ୍ଷ ଡାଳେ ପକ୍ଷୀରବ
ଉଠେ ଯେହ୍ନେ ଜୀବନର ତୂର୍ଯ୍ୟ ।

ଅନ୍ଧକାର ଘୋଟି ଆସେ
ଚଉଦିଗେ ନବଡରେ ଧୀରେ,
ଘନକୃଷ୍ଣ ଆସ୍ତରଣ
ଢାଂକି ହୋଇ ଆସେ ପୃଥିବୀରେ ।

ଅବସାଦେ ଅବସନ୍ନ
ଆଗୋ ମୋର ପ୍ରିୟତମା ଝରୁ,
ତେଜି ସୁପ୍ତ ବ୍ୟଥା ଭରେ
ଦୁଇ ଢଗେ ଯାନ୍ତି ନଦୀ ଝରୁ ।

ଶଶାଂକ ମଉନାବଣ
ଜ୍ୟୋସ୍ନାସ୍ନାତରେ ପଲ୍ଲବ ଉପରେ-
ବାତାୟନ ପଥେ ମୁହିଁ
ଗୃହିଁ ରହେ ସାରା ନିଶୀଥରେ ।

ସ୍ୱାର୍ଥପର ଦୁନିଆଏ
କରେ ମୁହିଁ ପ୍ରିୟାରେ ପ୍ରାର୍ଥନା,
ଧୂପ ଦୀପ କବା ଲେଡା
ହୃଦତାରେ କରେ ବନ୍ଦାପନା ।

ଦିନୁଦିନ ବଢ଼େ ବ୍ୟଥା
ଚଟାଉତ ଅଂସୂନ କାହିଁକି ?
ଦେହଳୀରେ ଡାଳି ମଥା
ଖୋଜୁଥାଏ ତମର ପାଇଁକି ।

କର୍ମରତ ବସୁଂଧରା
କି କରିବ ମନ ମାନେ ନାହିଁ-
ଯୌବନ ବସଂତ ପିକ
ଚୂଂତାଙ୍କୁର ଖୋବେ ଆଉ କାହିଁ ?

ପକ୍ଷଦ୍ୱୟ ଯଦି ମୋର
ଏ ଶରୀରେ ଥାଆନ୍ତା ପ୍ରେୟସୀ,
ନିମିଷକେ ବିଶ୍ୱ ଭ୍ରମି
ଲଭିଥାନ୍ତି ତୁମରେ ଭରସି ।

ବଂନ୍ଧା ସମ ଲଗେ ମୋତେ
ଚଉଦଗ ଯେହ୍ନେ କାରାଗାର,
ଯାଅ ହଂସ ମୁଗ୍ଧ ଚତ୍ତେ
ବାରମ୍ବାର କରେ ନମସ୍କାର ।

ମୁ ଚୁନାଳ ଦୁଇ ଶୃଭ୍ର
ଦେଉଅଛୁ ପାଥେୟ ତୁମରେ,
ପ୍ରିୟାରେ ମୋର ସନ୍ଦେଶ
ବାର୍ତ୍ତା କହିବାକୁ ସ୍ନେହଭରେ ।

ତୁମେ ପର ହିତାକାଂକ୍ଷୀ
ଧନ ଜନେ କର ଉପକାର,
ଶୁଣିଅଛୁ କେଉଁ ଯୁଗୁଁ-
କରେ ତବେ ତେଣୁ ଉପଗ୍ରହ;-

ଦୂତ ହେବାପାଇଁ ଯୋଗ୍ୟ
ତବ ଶ୍ଳାଘ୍ୟ ନନ୍ତକରେ ଗାନ,
ଶ୍ୱେତ ଜରଜର ଅଂଗ,-
କର ବନ୍ଧୁ ତ୍ୱରେ ଅଭିଯାନ ।

ପ୍ରିୟତମା ଥିବ ଗୃହୁଁ
ଅଭିମାନ କରି ମୋତେ ସେହୁ,
ପଦୁଟିଏ କଥା ଦେଇନାହିଁ
ରକ୍ତ ଚଂଚୁ ଆହେ ଶୁଭ୍ରଦେହୀ !

ଚବୁକର ତଳଭାଗେ
ଶୋହେ ଶୁଭ୍ର ତିଳ ଚାନ୍ଦ୍ରମୟ,
ଅଂଗୁଳୀୟ ନଅ ଏହି
ତମ ସାଥେ ଆସିବ ନିଶ୍ଚୟ ।

ମଂଦ୍ର ସ୍ୱରେ ବାଉଥିବ
ହାତେ ଧରି ପ୍ରଶସ୍ତ ବେହ୍ଲା,
ମନ-ତନ୍ତ୍ରୀ ସ୍ମୃତି-ସରେ
ମାରୁଥିବ ବିରହ ଆହୁଲା ।
ଅକାତରେ ଆସିବ ସେ
କର ନାହିଁ ତିଳେକ ସଂଦେହ,
ପ୍ରଣୟର ଅନୁବଂଧେ
ସମର୍ପିଛି ମୋତେ ତାର ଦେହ ।

---

## ଜ୍ୟୋତ୍ସ୍ନା-ପ୍ରଦୀପ

ନୂଆ ପ୍ରିୟ ରାଣୀ ଆସି ବାଢଲାଣି
ସାତ ବରଷ,
ଭୋଗ ହେଲାଣିତ ସୁଖ ଓ ଦୁଃଖ
ଖେଦ ହରଷ ।

ଶତ ଅଭିମାନ ଶତ ଅନୁରାଗ
ଝରଣା ସର,
ସ୍ନେହ ପ୍ରୀତି ବାର ଜୀବନ ଆବୋର
ପଡ଼ନ୍ତି ଝର ।

ନନ୍ଦ ଚନ୍ଦ୍ରାଁଣୀ ତଳେ ଚର୍ଚିତ
ପ୍ରଣୟ ତୂଳି,
ଗଣ୍ଡପରେ କେକୀ ପୁଚ୍ଛ ଶୋଭଇ
ପ୍ରଶ୍ରେୟ ଦୁଳି ।

ଦୁଇ ବରଷର ମଧୁର ମମତା
ହୃଦୟୁ ଢଳା,
ମିଳନ- ତଟରେ ଫୁଟିଛି ଗୋ ରାଣୀ
ମଞ୍ଜୁ କଳିକା ।

ନିତ୍ୟ ହରଷ ଦେଇଅଛ ରାଣୀ
ହୃଦୟେ ଢାଳି,
ଜୀବନ-ପ୍ରଦୀପେ ଅନୁରାଗ ଶିଖା
ଆଦରେ ଜାଳି ।

ମଳ ନହେ ତବ ଆଲୋକ ରଶ୍ମି
ଯାଇଛି ଦ୍ରବ,
କମନ କଣ୍ଠୁ ସଂଗୀତ ସୁଧା
ଆସିଚ ସ୍ରବ ।

ବନ-ବିହଂଗ କଣ୍ଠୁ ନିନାଦ
ପୂରବୀ ଗାନ,
ଗୋଲାପ ଶ୍ରବଣେ ଢାଳିଚ ରାଗିଣୀ
ପ୍ରାଗ୍‌ଭିମାନ ।

ଲତା ତଳେ ଫୁଲ ଝଡ଼ିଚ ନ ଫୁଟି
ମଉଳି ଯାଇ,
ନିଶୀଥ ଓ ଦିବା ଚଂଦ୍ର ସୂର୍ଯ୍ୟ
ମୁଖେ ଅନାଇ ।

ମନର ଝରଣା ମନରେ ମରିଚ
ହାସ୍ୟରେ କାହିଁ,
ତବ ସୁଭାଗମ ସ୍ନେହ ଅନୁପମ
ଅଯତ୍ନେ ରହିଁ ।

ଉଲ୍ଲାସ ଭରା ଯୌବନ ଗୀତ
ଗୋପନେ ଗାଇ,
ତରୁଣ ଏ କବି ଆକାଶେ ଅନାଇ
ହୋଇଚି ବାଇ ।

ବସନ୍ତ ବାତ ବହୁଚ ସଧୀରେ
ହଲାଇ ଡାଳ,
କାହାର ବକ୍ଷେ ଥରଇ ପଦ୍ମ
ମୃଦୁ ମୃଣାଳ ।

ଶତ ଅଭିମାନ ଶତ ବନ୍ଧନ
ମମତା ଆହା,
ଲୁଚିଗଲା କାହିଁ ରହସ୍ୟ ପୁରେ
ଧରଣ ବାହା ।

ଆଉକି ଖୋଜିଲେ ଆସିବ ବାହୁଡ଼ି
ଗତ ଘଟଣା,
ଉଦ୍ଦାମ ସେଇ ମୁଗଧ ଲଗନ
ମାନସ ବଣା ।

ଲୁଚି ସେ ଯାଇଛି ପୂର୍ଣ୍ଣିମା ରାତି
ଜ୍ୟୋତ୍ସ୍ନା ତଳେ,
ତଥାପି ତମର ପାପଟି ସଦସ୍ୟେ
ସେଇଠି ଜଳେ ।

---

## ବସଂତ ତମେ ଆସିବ

ଫାଲଗୁନ ରାଣୀ ଆସିଛ ଧରଣୀ ଦୁଆରେ,
ଠାଉଛି ନଅଗୋ ଏକାଂତ ପୁରେ ତାହାରେ ।

ଅମ୍ର କାନନେ ଉଡ଼ାଇଛୁ ତାର ପତେ,
ଅଳି ସଂଗୀତେ ଝଂକୃତ ଏଇ ମରତ ।

ମାନବ ମାନସେ ଛଂଧିଛ ଶର-ତୁରିତ,
ମଧୁକର ଶ୍ରେଣୀ ଝଂକାର ନାଦ ସ୍ଫୁରିତ ।

କୋବଦାର ବନେ ଅଭିସାର ଆଜ ରଚିଛ,
ଲୋହିତ ଓଢଣା ଦେହରେ ଓଢାଇ ଆସିଛ ।

ବକୁଳ ପେନ୍ଥା କସ୍ତୁରୀ ବାସ ଚହଟେ,
ଆହ୍ୱାନ ଗୀତ ପରଭୃତ ଆଜି ପ୍ରକଟେ ।

ମନ ମଂଦିରେ ସ୍ମରଦେବ ଆଜ ପୂଜନ୍ତ,
ଘଂଟା ବଜାନ୍ତେ ଇନ୍ଦୀଜୀର କୂଜନ୍ତ ।

ଆରତ୍ରି ବାଢ଼ଇ ଊଷା ଦିନକର କିରଣ,
ପଦ୍ମ କଳିକା ଫୁଟିଛି ପାଟଳ ବରଣ ।

ଚରଣ ଗୁଞ୍ଜନେ ବାଜଇ ନୂପୁର ତାହାର,
ଯୁବଜନ ପାଇଁ ତୂଣୀରୁ ବିଶିଖ ବାହାର ।

ଊଷା-ପାରାବତ ଗାତ୍ର ଫୁଲଣ ବକଶେ,
ଫାଲ୍‌ଗୁନ-ରାଣୀ ମଳୟ ମାରୁତେ ପରଶେ ।

ମହାକବି ଆଏ ସ୍ୱାଗତ ଗୀତିକା ମଧୁରେ,
ପରବାସୀ-ପ୍ରିୟା ଅଶ୍ରୁ ଢାଳଇ ବିଧୁରେ ।

ସ୍ୱର୍ଣ୍ଣ-କେୟୂର ଖଚିତ ଶୀର୍ଣ୍ଣ କରରୁ,
ଓଢ଼ଣାଞ୍ଚଳତ ବେଦନା-ଅନତ-ଶିରରୁ ।

ବ୍ୟଥା-ବିପଂଚୀ ସ୍ପନ୍ଦିତ ମାନସ ଗହନେ,
ବସଂତ କିପାଁ ! ଆସିଲା ଏଥର ଭବନେ ?

ତିଳଫୁଲ ସମ ବଦନେ ତାହାର ନାସିକା,
ଘନ କୁଂତଳୁ ଝରିପଡ଼େ ନବ-କଳିକା ।

କାଂତ ବିରହେ ଅରଯାଏ ତାର ମରମ,
ସନ୍ନିଧେ ନାହିଁ ଆରାଧ୍ୟ ପତି ପରମ ।

ବିଷାଦ-ଦୁଃଖ- ଭେଳା ଚଳେ ଏଇ ମରତେ,
ହୃଦୟ ବିଦାରେ ବସଂତ-କଥା-କରତେ ।

—୨—

କିଏ ବା କାଂତ ପାଶରେ ବସିଣ ସୁଆଗେ,
ପ୍ରଣୟ-ମଦିରା ପିଆଇ ସେନେହ ସରାଗେ ।

ଆଶ୍ଳେଷ ରଭେ   ଘନ ଘନ ସ୍ପର୍ଶ ବାହୁରେ,
ଅଧର-ପାତ୍ରୁ   ପିଅନ୍ତି ପୀୟୂଷ-ମଧୁରେ ।

ବନ-ଅଙ୍ଗନରେ   ଧାବନ୍ତି ମୃଗ ମୃଗୁଣୀ,
ପ୍ରୀତି ବନ୍ଧନସ୍ତେ   ବ୍ୟସ୍ତ ତରୁଣ ତରୁଣୀ ।

ଫାଲ୍‌ଗୁନ-ରାଣୀ   ଆସିଛି ଧରଣୀ ଦୁଆରେ,
ଚେଷ୍ଟୁଟି ନଅଗୋ   ଏକାଂତ ପୁରେ ତାହାରେ ।

---

## ରିପବ୍ଲିକ୍

ଆଜି ରିପବ୍ଲିକ୍,
ଛିନ୍ନକର ଶତାବ୍ଦୀ ପ୍ଲାବିତ ଗ୍ଲାନି ପୁଞ୍ଜୀଭୂତ
ତ୍ରିବର୍ଣ୍ଣର ଧ୍ୱଜାତଳେ,
ଆସିଅଛ ଅବତରି,
ଆହେ ମୋର ପ୍ରିୟ
ଛବିଶ ଜାନୁଆରି ।
ଭାରତ ଚିଂଜକା ନୂତନ
ସଂବିଧାନ କରିଚ ରଚନ
ହେ ରିପବ୍ଲିକ ବାସରି ।
ଭାରତର ହୋଇଛି ସ୍ୱାଧୀନ,
ଆହେ ମୋର କଂକାଳ ଜନତା,
ଯୋଡ଼ିତକ କର-ଦ୍ୱୟ,
ଏହି ଶୁଭ ଦିବସରେ ପ୍ରଣାମ ପ୍ରଣାମ
ଦେଶପ୍ରତି ବଢ଼ାଅ ମମତା

କ୍ଷୁଧା କରେ ନିବାରଣ ଆଂଜୁଳାଏ ଅନ୍ନ,
ଦେହାବରଣ ପାଇଁ ସ୍ୱଖଂଡେ ଗାମୁଛା,
ନବଜାତ ଶିଶୁ ଓଠ ପୁଟେ
ଦେବା ପାଇଁ କ୍ଷୀର
ସଂବିଧାନ ଦିଏ ପ୍ରତିଶ୍ରୁତି
ଜନତା ହେ କର ନମସ୍କାର ।

ବେତାରେ ତୁଂଗ-ଶିଖ
ଦୋହଲଇ ସମୀରଣେ
ଭାସି ଆସେ ଆଶ୍ୱାସନା ବାର୍ତ୍ତା,
ଆକାଶରେ ଅଭିନବ ଖଂଡ ବଳାହକ
ପ୍ରେକ୍ଷାଗାରେ କରେ ମଙ୍ଗଳ-ମଂତ୍ରଣା,
ଦେଶବାସୀ ଶିଳେ ଦିଏ ପ୍ରାଣପୂର୍ଣ୍ଣ
ସଂଭ୍ରାଂତ ସଂଦେଶ, —

ହେ ଜନତା,
ଅଭ୍ୟୁଦୟେ ହୁଅ ଅଗ୍ରସର,
ଦୂର ହେବ କ୍ରମେ ଜୀବନ ଅଂଧାର,
ପ୍ରସ୍ତର-ଫଳକେ ଲେଖ
ସୁବର୍ଣ୍ଣ ଯୁଗର ଇତିହାସ
ହେ ଶତାବ୍ଦୀର ଦିବସ ।

କୁଲି ଓ ମୂଲିଆ,
ମଜଦୂର ଓ କୃଷକ,
ସମାଗତ ଆଜି ବେତାର କେନ୍ଦ୍ରର
ବିପୁଳ ଅଂଗନେ,
ଆଶାର ପାଥେୟ
ବେତାରର ଶୀର୍ଣ୍ଣ କଂଠେ
ଆସିବ ହୁଏତ

ବୁଭୁକ୍ଷା, ମେଂଟନେ ସୁବିପୁଳ ଖାଦ୍ୟ,
ସେଇ ହେବ ଆସିକ୍ତ ଜୀବନ-ସାମଗ୍ରୀ
ଯେହ୍ନେ ରସିବଂତ କାବ୍ୟ ଉପସଂହାର ।
ଦକ୍ଷିଣାତ୍ୟ ପ୍ରଷାତ ଗାୟିକା
ସୁବ୍ବୁ ଲକ୍ଷ୍ମୀ – ପଦ୍ମ ବିଭୂଷଣ
ଗାଏ କର୍ଣ୍ଣାଟକୀ ଗୀତ,
ଆଳାପନେ ମଧୁମୟ ସ୍ୱର
ଷାଣାଜଣା କଂଠ ଆସେ ଭାସି,
ଅଚ୍ଛିନ୍ନ ଲହଡ଼ୀ ସମ ।
ବିଶାଳ ମାଂଦ୍ରାଜ ନଗରୀ ସୌଧ ଚୂଡ଼ ଚୂଡ଼େ
ଅନ୍ତରବ ତାଳେ,
ଫଲ୍‌ଗୁ ପ୍ରସ୍ରବଣ ।
ଧୂସର ଗୋଧୂଳି କ୍ରମେ ହୁଏ ଲୀନ
ଅନ୍ୟଆଡ଼ୁ ଭାଓଲୀନ ନାଦ
ବିଷାତ ବାଦକ
ଡ୍ୱାରଂ ଭେଂକଟସ୍ୱାମୀ କରେ
କନଡ଼ା ବଗର ମଧ୍ୟମେ ପ୍ରସ୍ତାର
କେଥଡ୍ରାଲ୍ ତଂତ୍ରୀ ଉପରେ ଅଂଗୁଳି
ସାବଲୀଳ ଗତି,
କରଜ, ଅଦ୍ଭୁତ ପ୍ରକାଶ, ଝନନ, ଝନତ
ଦୁର୍ବା ଉ´ରେ ଯେହ୍ନେ ତୁଷାର ବିଂଦୁ ଧ୍ୱନିଘାତ
ଶାବ୍ଦିକ ସଂହତି ।
ବେହୁଲ୍ ଉଠଇ ବାଜି
ସେତୁବଂଧ ଶୀର୍ଣ୍ଣପଥେ ଧାଏଁ
ମାନସର ପକ୍ଷୀରାଜ ବାଜି ।
ଦେଶ ମୋର ସ୍ୱତନ୍ତ୍ର ସ୍ୱାଧୀନ
ଫୁଙ୍ଗବାଦ ଭିତ୍ତି ପରେ ଗଢ଼ି
ମଖମଲ କମନୀୟ ହର୍ମ୍ୟ
ସେହିଠାରେ ନାହିଁ କାହାର ଶାନ୍ତି ଓ ବ୍ୟଂଜନା

ଜାତି-ଜାତି, ଗୋଷ୍ଠୀ-ଗୋଷ୍ଠୀ;
ସମାଜ-ସମାଜ, ଦେଶ-ଦେଶ;
ସ୍ତ୍ରୀ-ପୁରୁଷ, ନର-ପଶୁ;
ମଧ୍ୟେ ନାହିଁ ପ୍ରଭେଦ ଓ ତାରତମ୍ୟ
ସକଳେ ସମାନ
ରାଇଜର ମାନଦଣ୍ଡ ସ୍ତମ୍ଭପରେ ଫରଫର ଉଡ଼େ
ସ୍ୱାଧୀନ ଦେଶର ତ୍ରିବର୍ଣ୍ଣ କେତନ ।
ନେପଲୀ ଶବ୍ଦରେ ଡାକି
ଗୌର ଅଙ୍ଗ-ଲତା,
ଚାହିଁ ରହେ ଶୋଭାନ୍ୱିତା ବାରବଧୂ,
ଅପଲକ ନେତ୍ରକ୍ଷେପରେ ମୌନମଧୁ ।
ତଥାପୁନ ଶୃଙ୍ଗାଟକ ଡେଇଁ-ଭ୍ରାନ୍ତ
ଏସନ ବେଳାରେ ଫେରେ ଛୁଟି ଗୁମାସ୍ତା
ହାତେ ଧରି ମହୀଶୂରପାକ ପୁଡ଼ା ।
ମସ୍ତକ ତାହାର ମଣ୍ଡିତ ପୁଷ୍ପଗୁଚ୍ଛଖଚେର,
ଦୃଷ୍ଟି ପଡ଼େ ଲଡ଼ାଖୁଡ଼ ଚରଣ ଯୁଗଳେ,
ବାହୁଗଣ୍ଡେ ଗୃହମେଲୀ ଅନ୍ତରେ
ମିଷ୍ଟଗନ୍ଧ ପ୍ରଲେପନେ ।
ବାଧା ଦିଏ ତୁଙ୍ଗ-ଶୈଳବତ ସ୍ତନଯୁଗ ।
କୃଷ୍ଣ ବସନ ଉହାଡ଼େ କହେ
ରଜନୀ ଉଲଗ୍ନ କଥା ।
ଭ୍ରୂକୁଟେରେ ସୁତୀକ୍ଷ୍ଣ କଟାକ୍ଷ ହାଣେ
ସଂଜର ଦୁଇଟି କୂଜନ ରହିତ ପକ୍ଷୀ,
ଫେରଯାଉ ମାଡ଼େ,
ଯୁକ୍ତି ମିଳେ ପରି
ଦୁଇ ଅବା ତିନ ଗ୍ରାହକ ରସିକ,
ପଡ଼ନାହିଁ ଥରେ ହେଲେ
ପେଲବତ ଚକ୍ଷୁ ପ୍ରତା ।

ଉଦ୍‌କାସ୍ଥିତ !
ଜୀବନ ଲେହନେ ଆହା ଭିକାରୁଣୀ ରତ ।
ଦୂର ହୁଅ ଦୂର ହୁଅ
ଏ ଦେଶ ବେଶ୍ୟାର;
ରାତ୍ରୀଯାଏ ବିସ୍ତୀର୍ଣ୍ଣ ନଗରୀ କ୍ରୋଡ଼େ
କ୍ରନ୍ଦେ ଅପସର
ଶେଷ ପ୍ରାପ୍ୟ ରୂପଲୁବ୍ଧକ ଅଭିସାର,
ବାରବଧୂ ପାଶେ ଆସେ ନାହିଁ କେହି
ଆସ୍ତି ନ ପୁଣି ସମାଜ ଆଦେଶେ
ଜୀବନଟା ନୁହେଁ ମଂନ
ସେହିଁ ଯେହେତୁ ଅନୁଭବେ ସୁଖ,
ଅଂତରେ ଯେନ ଭାରତର ଦୁଃଖ,
ସ୍ୱାଧୀନ ସ୍ୱଦେଶ ମାରବ ଗୀତିକା ଗାଇ ।

---

## କାର୍ତ୍ତୀକ

ଆଶ୍ୱିନର କାଶଫୁଟା ସମୀରଣ ଯାଇ
ଏ ଧରାରେ ଆସିଅଛି କାର୍ତ୍ତୀକ;
ସମୀରଣ ଅଂଗେ ତାର ଧରଚ ପୁଲକ
ଅଂଗା ଅଂଢ଼ା ଦାଓ୍ୱା ।
ଉଷସୀରେ ଉଠଇ ଶିତ୍କାର;
ବୋହିଯାଏ ଶୀତଳ ସମୀର
ନାସିର ଚୁଚୁକ ଚୁଲେ
ଓ ଅଧରର କୂଳେ
ଥ୍ରଥ୍ରାଇ ଉଠେ ଶୀତ ବାତ
ସୁମଧୁର ଏ ପ୍ରଭାତ ।
ନାସି ଉଠେ ତାମ୍ରଚୂଡ଼ ଡ଼ାକେ
ନଭସରେ ଲମଳନ ତାରା
ସ୍ୱାତୀ ଢଳେ ଅର୍ଯ୍ୟମାର ଜ୍ୟୋତି

ରଶ୍ମି କୋଟି କୋଟି
ଦୁଇ ମାସ ବିତିଲଣି
କୃଷକ ତା'ଧାନ ଗଛ ପୋତି —
ଚାହିଁଅଛି ସନ୍ତୃଷ୍ଟ ନୟନେ
କେଦାରକୁ, କରିବ ସେ
ଫସଲ ଆଦାୟ
ନେଇ ଆସିବ ନିଜ ଦୁଆରେ ବଢ଼ାଇ ବଢ଼ାଇ ।
ଆକାଶ ତଳେ
ଲଘୁ ସମୀରଣରେ
କାମିନୀଏଁ ଯାଉଛନ୍ତି ସ୍ନାନ ପାଇଁ
ଶୁଭ୍ର ନୀଳ ଜଳ ଅଞ୍ଚଳେ
ଫୁଟିଅଛି କେତେ ଶତଦଳ ।
ନୀଳାକାଶ ଉପର ଉଠେ ହାସ୍ୟରୋଳ ।
ଫେରିବେ ସେ ପୂଜା ପାଇଁ, —
ବୃନ୍ଦାବତୀ ପୂଜା, —
ତୁଳସୀ ଚଉରା ମୂଳେ
ଦେବେ ଝୁଣ୍ଟି କୁଞ୍ଚିତ କୁଟିଳ
ଭାଲେ ଦେବ ସିନ୍ଦୂର ନିଟିଳ
ଉଲ୍ଲୋଳିକା ହୃଦେ ଅନ୍ତରୀକ୍ଷ
ପିଇବ ପୂରି ମଧୁର ବହ୍ଳଳ
ଚାଲିଅଛି ଆୟୋଜନ, —
ଗୃହ ଅଭିମୁଖେ ଚାଲନ୍ତି ସହଚଳେ
ପଦପାତେ ଥରେ ଅପୂର୍ବ ଅପୂର୍ବ,
ନୂପୁର ଝଣନ ଝଣନ ।
ପଥପାଶ୍ୱେ ହେମଶସ୍ୟ ହାତ ଠାରି ଡାକେ
କଅଁଳ ଶିଶୁରେ ବଧୂବକ୍ଷ ମଧ୍ୟେ ଜାକେ ।
ଆସିଚି କାର୍ତ୍ତୀକ,—
ଗାଉଚି ପିକ,—

କେଶଗଚ୍ଛୁ ଝରିପଡ଼େ ରମଣୀଙ୍କ
ବିନ୍ଦୁ ବିନ୍ଦୁ ପାଣି
ସିକ୍ତବାସ, କି ସୁନ୍ଦର
ଦେହ ସୌଷ୍ଠବର ଠାଣି,
ଫୁଲେ ଫୁଲେ ଉଠେ ଇନ୍ଦୀବର–
ଝଙ୍କାରିତ ବାଣୀ,
ଏ ସମସ୍ତେ ଅନ୍ତଃପୁରେ
ଚିତ୍ରାକଂନକରେ ବନ୍ଦିବାସୀ
କଂଠେ ତାର ଫୁଟେ ଗୀତ–
ଧୀରେ ଧୀରେ ଧୀରେ
'ଓଁ ଶ୍ରୀଜୟ ଜଗଦୀଶ ହରେ' ।
ସୁମଧୁର ସ୍ୱର
ଶୀର୍ଣ୍ଣ କଂଠୁ ଆସେ ଭାସି
ଶୟନରୁ ଉଠେ ଏକ
ଧର୍ମ-ପରବାସୀ ।
କ୍ରୁଦ୍ଧ ଲାଗେ
ପାରେନାହିଁ କହି 'ବଂଦକର' ବଂଦକର;
'ଜଗଦୀଶ' ଗାନ
ଦିଭୁ ଶ୍ଳାଘା ମକରନ୍ଦ ପାନ ।
ବାଟବଣା ମୃଗବତ
ଧରେ ମୁହିଁ କାଠର ବେହେଲା
ଏ ସାଧନା କରି ମୁହିଁ
ତ୍ରିଶ ବର୍ଷ ହେଲା,
ଉତ୍‌ଥାନ ପତନ ମଧ୍ୟେ
ଗୁଳିତ ମୋ ପାଦ
ଲୋଡ଼ୁନାହିଁ କାହାଠାରୁ ସାଧୁବାଦ ।
ସାଧନାର କାହିଁ ଅଂତ
ଯିବା ପାଇଁ ନାହିଁ ଶିଳା କାଂଥ
ଏ ଦେଶରେ ମୁହିଁ ଜଣେ ପାଂଥ;

ବଜାଇ ବେହେଲ ମୁହିଁ
ବାରେ ବାରେ ହସେ ଆପଣାରେ
ବାରେ ବାରେ ରୁଦ୍ଧ ଆବେଗରେ
ନେତ୍ର ଅଶ୍ରୁ ଝରେ ।
ତନ୍ତ୍ରୀ ପରେ ଟାଣେ ଧନୁ
ନାଦ ଉଠେ ତହୁଁ,
ଅସ୍ପଷ୍ଟ ସ୍ୱରରେ କିଛୁ
ବେହେଲରେ କହୁ କହୁ,
ଶୁଣି ନାହିଁ ମୋର କଥା
ଧରେ ସେହୁ ନୂଆ ରୂପ
ଚକ୍ଷୁ ଆଗେ ଦେଖାଦିଏ
*ପେଗାନିନି ବେହେଲର ଭୂପ ।
ହାତିଗୋମା ପାଧାନିସା
ବାଏ ଛନ୍ଦ ସ୍ପର୍ଶରେ
କର୍ଣ୍ଣ ଟାଣିନିଏ ମନ,
ସେହି ଗୀତ ସେହି ସ୍ୱର
'ଓଁ ଜୟ ଜଗଦୀଶ ହରେ'
ଆହେ ମୋର ଶ୍ରୋତା
ତପୋବନ ଯାଇଅଛି ଖସି ପିଚ୍ଛିଳ ସଂସାରେ
ଏହି ଗୀତ ଏହି ସ୍ୱର
ବଜାଇବା ପାଇଁ
ଦିଅ ଅନୁମତି ବାରେ
ବଜାଇବ ଅକୁଣ୍ଠିତ ବସି ।

---

*ଜର୍ମାନର ଖ୍ୟାତନାମା ବେହେଲ ବାଦକ

## ସଂଧାନୀ

ଗିରିବନ ନଦୀନଦ କଂତାର ସରଣୀ,
ଭ୍ରମି ତ୍ରିଭୁବନ ବାନ୍ଧି ଦଢର ଚରଣୀ —
ବ୍ୟାଧି ରୁଗ୍ଣ ଭିକାରିଣୀ କୋଷ୍ଠରୋଗୀ ପାଶେ,
ଭ୍ରମିଲି ତବ ସଂଧାନେ, ଫେରିଚି ହତାଶେ ।

ପାଇତ ପାରିଲି ନାହିଁ କାହିଁ ଏ ଧରିତ୍ରୀରେ,
ହେ ବିଶ୍ୱ-ଜୀବନ ମୋର, ଦେଖାଦିଅ ବାରେ —
ନିର୍ବାସିତ-ପ୍ରାଣୀ ମୁହିଁ ଖିନ୍ନ ତ୍ରିଭୁବନେ,
କିପରି ପାଇବି ତବେ ହେ ବିଶ୍ୱ ଜୀବନେ !

# ଶରୀର ଓ ଶୋଣିତ

ଉତ୍କଳି ହୋଇ ଆଂଧ୍ରରେ ଜନମିଛ,
ସ୍ୱାନ୍ତରେ ଖେଳଇ ଓଡ଼ିଆ ଶୋଣିତ ଘାଠ ।

ଏ ଶରୀର ଗଢ଼ା ଆଂଧ୍ରର ଅବଦାନେ,
ପ୍ରଣିପାତ କରେ ତେଣୁ ତାରେ ସମ୍ମାନେ ।

ଓଡ଼ିଶା ଡାକଇ ଇଂଗିତ ଦେଇ ମୋତେ,
ଭାସି ଭାସି ଚଳେ ଆଂଧ୍ର ମମତା-ସୋତେ ।

ଭଲଲାଗେ ମୋତେ ଆଂଧ୍ରର ସଂସ୍କୃତି,
ଚିନ୍ତାହୁଏ ମୋ ଓଡ୍ର ରଖିବ ସ୍ମୃତି ।

ମରଣ ପଛକେ ବରଣ କରିବି ଭାଇ,
ଶେଷ ଜୀବନଟି କଟାଇବି ସେଠି ଯାଇ ।

ହୋଇପାରେ ତାହା ଘୋର ଅପରାଧ ମୋର,
ଛୁଟାଇ ପାରେ କି ଶୋଣିତ-ନବଜ-ଡୋର ?
ଦଅ ସଖା ତେଣୁ ସାଦରେ ମେଲାଣି ଆଜି,
ଉତ୍କଳ ମୋର ରଖିବ ଅର୍ଘ୍ୟସାଜ—
ଆସିଲାଣି ଆହ୍ୱାନ
ଗ୍ଲୁର କବ ମୁହିଁ, ନୁହେଁ ଅଟେ ବିଦ୍ୱାନ ।

---

## ଶୁଭ୍ରାନ୍ୱିତାର ସମର ବିଦାୟ

ନବ ବିବାହିତା ସୁଠାମ ଗଣ୍ଡରୁ
ଗୁଂଠନ ଖସିନାହିଁ,
ଶୁଭ୍ର ଲଲାଟ- ପୃଷ୍ଠେ ରାଜୁଚି
ଶୁଭ ସିଂଦୂର କାନ୍ତି ;
ପେଲବ ଅଧର ଓଷ୍ଠ ତଟର
ସସ୍ମିତ ରୂଚୁରେଖା,
ଗୋପନେ ରଞ୍ଜିତ ବଦନ ଭଡ଼ାଲେ,
ଦେଇନି ତିଳେକ ଦେଖା;
ନୟନ-କମଳେ ଅପାଂଗ-ଆଳି
ମୌନ ବହିଛି ଲୋଭେ,
ଆରକ୍ତ ପଦ ଯୁଗଳ ଆନତ—
ଦୃଷ୍ଟି-ଆଲୋକେ ଶୋଭେ ।

ଫାଲ୍ଗୁନ ବାସର ରାତି,
ଏସନ ସମୟେ          ପ୍ରିୟା ତନୁଲତା
ବକ୍ଷ ଉପରେ ପାତି—
ଉଦ୍‌ବେଗ ଭରେ     ଅନାଇଲି ପ୍ରିୟା ମୁଖେ
ନାରୀର ଗୋପନ          ହୃଦୁଁ ଉତ୍ତର—
ଭିକ୍ଷା ପାଇବା ସୁଖେ ।

ଝୁମ୍ ଝୁମକାଇ          ଦୂରୁ ଭାସି ଆସେ
ଅର୍ଦ୍ଧ ପକ୍ଷୀ ସ୍ୱନ,
ମଡ଼-ଗନ୍ଧେ ଯେଣୁ          ଲଗିଛି ଶତ୍ରୁ—
ଫଣୀର ଆସ୍ଫାଳନ ।

କାଳ ରାତ୍ରିର          ନିଶ୍ୱାସବତ
ବହି ଆସେ ସମୀରଣ,
ଧୂମ୍ରପଦସୂତୀର          କରୁଛି କବାସେ
ବସ୍ତ୍ର ଅପହରଣ ।

ଛିନ୍ନ ମେଘେ          ବିଦ୍ରୂପ କରି
ଶଶାଙ୍କ ନଭେ ଭ୍ରମେ,
ସଂଭ୍ରମେ ପ୍ରିୟା          ଗୃହିଁଲି ପ୍ରିୟାରେ
ନୟନେ ଅଶ୍ରୁ ଭ୍ରମେ ।

ବୁଝି ନ ପାରିଲି ଲେଶ—
ତାର ଏ ଆଗମ          ପ୍ରିୟ-ଜୀବନରେ
ଦେଇଛି କି ଘୋର କ୍ଲେଶ !

ଯୌବନ-ଝର          ପଡ଼ିଅଛି ଫାଟି
ଶ୍ୱେତ ଅଂଶୁକ ଦେହ,
ନିତମ୍ବ ଚୁମେ          କୁନ୍ତଳ-ଦାମ—
ତାହାର ଉପମା ସେହି ।

ପ୍ରେମ ସୌରଭେ ପୂରିଯାଏ ମନ —
ପ୍ରୀତି-ଉଚ୍ଛ୍ୱାସ କରି,
ବାହୁ-ବନ୍ଧନ- ଆଶ୍ଳେଷ ଲଭି
ଚିତ୍ତ ଉଠଇ ଥରି ।
ବହୁଦୂର ଦେଶୁଁ ଆଣିଛି ଏ ଊଷା
ଉଦ୍‌ଭଟ ସଂଦେଶ —
ରିପୁ ପଦ ତଳେ ନିଜ ସ୍ୱାଧୀନତା
ଦେଉଛି ଆପଣା ଦେଶ;
ସ୍ୱାଧୀନ ଭାରତ ଦେଶ କଲି ଯୁଗେ
ପଡ଼େ ପରାଧୀନ ହୋଇ,
ଗିରି ଉପତ୍ୟ ଡେଇଁ ଶୁଭୁଅଛି
ଅରି ଆଗମନ ରଡ଼ି ।
ସକଳ ମମତା ରଜ୍ଜୁ ଛିଣ୍ଡାଇ
ଯିବାକୁ ପଡ଼ିବ ତେଣୁ,
ଗୃହେ ଗୃହ ପ୍ରାଣ- ପ୍ରିୟରେ ଯେହେତୁ,
ଆହ୍ୱାନେ ରଣ-ବେଣୁ ।
'ପାଇଛି ନିମନ୍ତ୍ରଣ —
ବର୍ବର ଚୀନ କରିଛି ଗୋ' ମମ
ଭାରତ ଆକ୍ରମଣ ।
ନେଫା ଓ ଲଦାଖ୍ ଘନ ଅରଣ୍ୟ
ବୃକ୍ଷନ ଉଚ୍ଛାଳେ ରକ୍ତ—
ଗୁଳି ବିନ୍ଧୁଛି ଭାରତ ଜଓ୍ୱାନେ
ଦୁର୍ଗମ ପଥ ବସ୍ତି,
ଶ୍ଲଥ ଗାଣ୍ଡୀବେ ଯୋଚିଛି ବିଶିଖ
ଶମୀରୁ ଆଣି ମୋ ସେନା,
ଦିଅ ଗୋ ମେଲାଣି ଯାଏ ସୀମାନ୍ତେ
ପ୍ରାର୍ଥନା ହେଉ ଧେନା ।

ଧର୍ମ ଆନ୍ଦୋଳନେ ଚିର ଉନ୍ମୁଖ—
ପୁଣ୍ୟ ଭାରତ ମାଟି,
ବୈଶ୍ୟ ଚୀନ ପାନ ପାଇଁ କିବା
ଏମାଟି ଯାଉଛି ଫାଟି ।
ଏ ମାଟିକି ଶୁଭେ ଅରାତି ରୁଧିରେ
ପଖାଳିବା ପାଇଁ ଦେହ ?
ଏ ମାଟି ଉପରେ ଶାସକ ହେବାକୁ
ବଳେକି ଚୀନର ସ୍ନେହ ?
ଚୀନ କିବା ଶୁଭେ ପାଳିବ ଆମରେ
ପାଇଟି କି ବଖରୁ,—
ଯାଅ ପ୍ରିୟତମ ଡାକୁଛି ସେ ଦେବେ
ଧର୍ମର ହେଉ ଜୟ ।
ସମରର ମୁହାଁ ପ୍ରାକ୍ ଅନୁଭବ
ଆସିଥିଲା ତୁମ କୋଳେ—
ଶାନ୍ତି ପାଇବ ବୋଲି ଗୋ ନିମିଷେ
ବକ୍ଷ-ଲତାର ଦୋଳେ ।
ଅରି ତୂରି ନାଦେ ଆସାମ ଆକାଶ
ଡେଉଛି ଉଚ୍ଛୁଳ ଆଜ,
ତମ ଭାଲପଟ ସିନ୍ଦୂର ଟିକା
କହେ 'ଯାଅ ରଣ ସାଜ' ।
ବାଳିବେ ସୁଧା ଚଷକେ ଝରିବ
ତକ୍ଷକ ହଳାହଳ,
ନେଫା ବନାନ୍ତର ସୂର୍ଯ୍ୟ ଦେଉଛି
ସଂଗ୍ରାମ କୋଳାହଳ—
ଯିବାକୁ ପଡ଼ିବ ଧାଇଁ—
ଧବଳ-ତୁଷାର ହିମାଚଳ କ୍ରୋଡ଼େ
ମାତୃଭୂମିର ପାଇଁ ।

ଶୁଣିଅଛୁ ପ୍ରିୟେ ଏ ମହାଜାତିଙ୍କ
ଶୌର୍ଯ୍ୟ ଡାଯ୍ନାବ ତମେ,
ମୃଗଶିଶୁ ଶୂରେ କ୍ଷୀର ରସପାନ
ବ୍ୟସନ ଉପକ୍ରମେ ?

ଚୀନକ ଶ୍ମଶ୍ରୁ କରବ ଲୁଣ୍ଠେଇ
ହାତେ ହାତ ଦେଇ ହାତେ,
ଧ୍ୱଜା ସ୍ତମ୍ଭରେ ଝୋଲାଇବା ପାଇଁ
ବାହୁର ଉପୋଦଘାତ ।
ଜାହ୍ନବୀ ଜଳେ କରବ ସ୍ନାହାନ
ଅସିର ଝନତ୍କାରେ—

ବୋମା ବନ୍ଧୁକ ନନାଦେ ଭରିବ
ଭାରତ ଗଗନ ବାରେ ?

କୁମାରିକା ଶିବ ଶିରେ ଦେବ ମାର
ମନାସିଚ ତା'ର ଜୟ ?

ଯାଅ ପ୍ରିୟତମ ଇଚ୍ଛା ଯେବେ ତା'ର
ଧର୍ମର ହେଉ ଜୟ ।

ବ୍ରହ୍ମପୁତ୍ର ନିଷ୍ଫଳ ମାର
ମର୍ମର ସ୍ୱନ ହାସେ,
ଲଦାଖ୍ ବନର ପତ୍ର ଝୁଲୁଚି
ଡ୍ରାଗନ୍‌ର ପ୍ରଶ୍ୱାସେ ।

ଫେରୁଛୁ କପୋତ ତୃଣ ତେଜ ଡାଳେ
ଏ ମୋର ସୈନ୍ୟ ହାରେ,
ଭାରତ ଗ୍ରାସନେ ଚୁଇନା ଦେଖୁଛି
ନଶିର ସ୍ୱପ୍ନାଗାରେ ।

ଗୁରୁ ତାଓ୍ୱାଙ୍ଗ          ଗୁଂଫାରୁ ଉଠି
ହ୍ୱାନ ଚୀନ କପ୍ତାନ—
ଚିତ୍ର ଫଳକେ          ନିରେଖି ନୁଂଖ
ମାରୁଚି ଯେହ୍ନେ ଶ୍ୱାନ ।
ହିମାଦ୍ରି ପଦେ          ଗଢ଼ିବାକୁ ହେବ
ତା'ପାଇଁ କବର ଏକ,
ଅସ୍ଥି କହ୍ଲାର          ବଷ ଦୁହିଁ ଦାରେ
ରମିବାକୁ ହେବ ବେକ,
ଦଅ ଗୋ ମେଲାଣି ଆଜ, —
ଓଂବରୁ ହାତେ          ବଢ଼ାଇ ଶୁଭ୍ରା
ନଟରାଜ ବେଶେ ସାଜ ।
ଗୁଇନା ନେଇଚି          ଶୁଷ୍କ ବରିଷ
ବସନ୍ତ ଋତୁ ଯାଏଁ,
ଚିବ ସଂଯମେ          ଚ୍ୟୁତ କି କରିବ
ତସ୍କର ସ୍ୱର ପ୍ରାପ୍ତେ ?
ଚୀନକ ଝାବଇ          ଖରୁ ଏଣୀ ସମ
ଲୁଚିବ ଭାରତ ସୂତ ?
ଉଠ ତଳ୍‌ଟରୁ          ମାର୍ତ୍ତଣ୍ଡ ତେଜେ
ମରଠା ଓ ରାଜପୁତ—
ଉଠହେ ଭାରତ          ସଂତାନ ଗଣ
ଉଠ ବିକ୍ରମୀ ଦଳ,
ଉଠ ଜୁନ୍ନାର          ଶିବାଜୀ ବଂଶ
ସଂଗ୍ରାମ କୁତୁହଳ;
ଦୃପ୍ତ ତୋ ପଦ          ପକାଅରେ ଦୃଢ଼େ
ଶିଥିଳ ନଗାଳ କର,
ସମର ଯୁଝିବା          ସମ୍ମାନ ଶିଖି
ହୁଅରେ ଅଗ୍ରସର ।

ଘଲେ ଚୁଂବନ ନୟ,
ଶତ୍ରୁ ଶୋଣିତେ ରଂଜି ଲଲାଟ
ଆସିବ ମୋ ପାଶେ ପ୍ରିୟ ।
ଅଧର୍ମ ହେଉ ଚିର ଅବସାନ
ଧର୍ମର ହେଉ ଜୟ,
ଶୁଭ୍ରାର ଏଇ ଅଂତିମ ବାଣୀ
ଅଂତିମ ବରାଭୟ ।

---

# ଦ୍ୱୈତ ସଂଗୀତ

ଜୀବନ ପ୍ରଥମ ପଲକ
ପଡ଼ିଲା ଗୋ ଯେବେ ପରସ୍ପରେ,
ଅଜ୍ଞାତ କ୍ଷୀଣ ଇତିହାସ
ଲେଖାହେଲା ଶୋଣିତ ସ୍ୱାକ୍ଷରେ;
ମରମ ଶତ ସୁପ୍ତ ଆଶା
ନିଶୀଥ ଲଜ୍ଜ୍ୟ ମୂକ ଭାଷା,
ପରଭାତ ପ୍ରଥମ ପୁଲକେ
ଆଲୋକିତ ଶୁଭ୍ର ପୃଷ୍ଠା ପରେ,
ଲେଖାଗଲା ଶୋଣିତ ସ୍ୱାକ୍ଷରେ ।
ବୀଣାତାରେ ନବଜାଇ ଗୀତ
ବୁଲଇଲା ଚଂପାଂଗୁଳି ଥରେ,
ଆମେ ଅବା ବୁଝିଲୁ ତା' ଭାବ
ନ ଶୁଭିଲା କିଂତୁ ତାର ଗୀର,

ମୂ ରୁଛନା କଲି ମୁଁ ରଚନା
ତମେ କଲ ରାଗ ଆଳାପନା;
ଗୀତଟିକୁ ଫୁଟାଇବା ପାଇଁ
ଉପାସନା ଲୋଡେ ଅବସର,
ଅନାହତ ଭାବନା ଅମର ।

ସନ୍ଧ୍ୟାକାଳି ଦୁଇ ପତ୍ର ତଳେ
ଧୂଳି ଯେବେ ନବଜନ୍ମ ମାଗେ,
ତମର ଓ ମୋର ପରିଚୟ
ଛଂଦତୋଳେ ସୂର୍ଯ୍ୟ ରଶ୍ମି ରାଗେ ।

ଅରବିନ୍ଦ ଚକ୍ଷୁ ମେଲେ ରବି
ଉଷା ଆସେ ଭବେ ପଡ଼େ ଛବି ।

ଡ଼ାକଦିଏ ତାମ୍ର ଶିଖି ଯେବେ
ଅରୁଣିତ ପ୍ରୀତିଶାଳା ଆଗେ,
ପଦ୍ମ ଡ଼ାଳେ କେଶ ହୃଷ୍ଟଭାଗେ ।

ପଥ ପରେ ଝରେ ପୁଷ୍ପରେଣୁ
କାନେ କହେ ଗୀତେ ନିଜ ବ୍ୟଥା,
ପ୍ରଭାନନ୍ଦ ଘଂଚ କୁଞ୍ଜେ ଉଠେ
ଅନ୍ତରର ମୌନ ଶତକଥା ।

ଅନ୍ତରୀକ୍ଷ ଭାଲ ଆସେ ନଇଁ
ନେତ୍ର ମୁଦେ ବିଭାବରୀ କଇଁ ।

ମାନସରେ ହଂସ ମେଲେ ଡେଣା
ବକ୍ଷେ ଯେନ ସୁବିପୁଳ ସତ୍ତା,
ତମର ଓ ମୋର ଗୋପନତା ।

---

# ଅତୀତର ଅଶ୍ରୁ ଟିକା

ଛିନ୍ନ କରି ନିଜ ଯଉବନ-ପଦ୍ମନାଳ
ଦେଇଅଛ ଅବଦାନ,

ଏ କବିର ଗଳାରେ ଲଂବାଇଛି
ମାନସର ଅନୁରାଗ-ମାଳ,

ମଧୁର କଂଠ ନିସୃତ ଲୋଭମାୟୁ ଅଭିମାନ,

ଦେଇଥିବା ଦରିଦ୍ର ଏ କବିପାଇଁ କେତେ ଗୀତରଚି
ସ୍ୱରେ ଦେଇ ଅପମାନ ।

କଂବୁ-କଂଠେ ଭରିଅଛ ପ୍ରଣୟ ପୁଲକ
ଓଷ୍ଠ ପ୍ରାଂତେ କିବା ମଂଦାର ଝଲକ
ଅକାତରେ ଅବା ଦେଇଅଛ ମୋଡ଼ି
ସ୍ୱର୍ଣ୍ଣ ମରାଳର ସୁକୋମଳ ଗ୍ରୀବା ।

ତମ ଶୀର୍ଣ୍ଣ ପତିତ ଉଡ଼ାଳେ
ଧରିବ ମୋ ନୟନ ଅଶ୍ରୁ-ସିଂଧୁ,
ବସଂତର ପରିଭୃତ କଂଠେ
ଛୁଡ଼ିଛି ମୋ ରାଗିଣୀ ନାଦବିଂଦୁ ।

ଆଂଦୋଳିତ ରାଗ ପୃଷ୍ଠେ ଧରି
ଦୁଃଖ ଚୂର୍ଣ୍ଣ ଜୀବନର ଛିନ୍ନ-ଖଣ୍ଡ,
ବିଚ୍ଛେଦ ପରବାଳେ ଥାପି
ଅଂଗୁଳିର ପ୍ରାଂତ ଦେହ୍ନେ ବଶ୍ରୁ-ଜଣା ।

ମାନସ-ସଂପୁଟେ ରଖିଅଛ
ବିଶ୍ୱପାଇଁ ନିପୀଡ଼ିତ ଶ୍ୱାସ-କଣା,
ଅରଣ୍ୟରେ ହୋଇଅଛୁ ସଖି
ଶରାହତ ମୃଗ ଯଥା ବାଟ-ବଣା ।

ଯିବା ବାଟେ ଉଡ଼ାଇଣ ଧୂଳି
ଯାତ୍ରା ମାର୍ଗେ
ଟ୍ରେନ୍‌ର ବାଷ୍ପୀୟ ଚକ୍ର ଗତି ଗେହେ,
ଦେଖିଥିଲି ତମ ବିମଳିନ ତନୁ ଆହା
କୁଂତଳ ବେଣୀ ବଂଧେ ଗୃହୁ ପୁଷ୍ପ ଗହା,
ମରିଚ ମୁଁ ସେଠି
ଘୋର ମାନସ ସଂକଟେ,
ଶରବିଦ୍ଧ ବଳାକା ସନ୍ନିଭ—
ଭୃଂଗ ଯଥା ମରଣରେ କରଇ ବରଣ
କେତକୀ କଂଟକିତ ବନେ ।

ହଜାଇଚି ଖିଳ ଆଶାଛଂଦ
ତମ ଗୃହୁ କଂଠର ନିଷାଦ ପ୍ରସ୍ତାରେ
ମୋର ନିଗୂଢ଼ ମମତା

ଶୋକ ତାପ କ୍ଳିଷ୍ଟ ସତ୍ତ୍ୱ
ପଥିକ ଗୋ ମୁହିଁ
ଗ୍ଲଲଅଛୁ ବନ୍ଧୁରିତ ବର୍ତ୍ମେ,
ଥାପି ଥାପି ପଦାଙ୍ଗୁଳି
ପଥପ୍ରାନ୍ତେ ହେବ କେଉଁ ମାହେନ୍ଦ୍ର ମୁହୂର୍ତ୍ତେ,
ଅବା ବାରେକ ଦେଖା
ଅଚିହ୍ନ ଭୁକେ, ଅତର୍କିତେ ।
ପ୍ରଦୋଷର ନିକଂାଚନ କ୍ରୋଡ଼େ
ଦେବ ତମ ଶୁଭ୍ର ଲଲାଟ-ଫଳକେ,
ମୋ ଜୀବନର
ଅବସ୍ମୃତ-ସ୍ମରଣିକା,
ଅଶ୍ରୁତର ଅଶ୍ରୁଟିକା।

---

## ଅମାବାସ୍ୟାର ଦୀପ

ଆକାଶରେ ଛୋଟ ଛୋଟ ତାରା
ଝିଲି ଝିଲି ହସୁଛଂତି;
ନାହିଁ ମୋଟେ ଜହ୍ନର ବିକାଶ —
ଶତ କ୍ରୋଶେ ଯାଇଅଛି ମରି
ଆଜି ଅମାବାସ୍ୟା;
ଅଂଧକାର ପକ୍ଷ ମେଲି
ବନାନ୍ତର ଶେଷେ,
ନେଇଛି ବିଶ୍ରାମ
ବସୁଧା ଆଶ୍ଳେଷେ ।

ସଂଜହର ଧଳାଫୁଲ
ଦୁଇବା ଛଟନାଟି,

ଘାସ ଉପରେ ପାଖୁଡ଼ା ମେଲି
ଖେଳୁଚଂତି
ଦିଶୁଚଂତି ସେମାନେ ଯେପରି
ମରକ୍ତ ଉପରେ ହିରବିଂଦୁ,

ତାଂକର ଉପରେ
ବକ୍ର ହୋଇ ପଡ଼ନ୍ତି
ଆକାଶ ତାରାର ସ୍ତିମିତ ଆଲୋକ
ମୁଁ ଦେଖୁଛି, ଅନନ୍ତ ଦୂରରୁ
କେଉଁ ଜଣେ ସୀମଂତିନୀ
ସେହି ବାଟେ ଚାଲିଯାଇ
ଧଳା ଶାଢ଼ୀ ପିଂଧି
ଥୋଇଗଲା ପାଦ ଚିହ୍ନ;
କିଏ ସିଏ ?

ଚଉଦିଗ ଅଂଧକାର
ନିର୍ଜନ ଶଦ୍ଦହୀନ,
ବହୁ ଆଗୁ ପକ୍ଷୀକଂଠ
ସ୍ୱର ଯାଇଅଛି ମରି—
କିଏ ସିଏ କିବା ତାର ନାଆଁ ?

ଅନତି ଦୂରରେ ବନକ୍ରୋଡ଼େ
ଗୋଟିଏ ଏକ ଗାଆଁ,
ଆଦିବାସୀ ଗାଆଁ;
ବାଇଦ ବଜାଇ ନାଚଂତି ସେମାନେ
ପବନର ବେଗ ଯୁଆଡ଼ିକି ରାତ୍ରିର ହିଲ୍ଲୋଳେ
କାନେ କାନେ ଶୁଭିଯାଏ
ବାଦ୍ୟ-ମିଶା-ନାଚ-ତାଳ କ୍ଷଣେ କ୍ଷଣେ ।

ହସେ ଖିଲି ଖିଲି
ଏଇ ସମୀରଣ—

କିଏ ସିଏ କବାଡାର ନାଆଁ ?
ଫେରିନାହିଁ ଆଉ
ଯେଉଁଟିଏ ଜାଳି ବନ ପୀଠିକାରେ —
ସେଇ ମୋର ମାଆଁ !
ଛୋଟ ଏକ ଗାଆଁ —
ଆଦିବାସୀ ଜନପଦ —
ଯହିଁ ସେମାନେ ନାଚନ୍ତି
ବଜାଇ ବାଇଦ;
ବନ ବୁକୁ ହସେ ଖିଲି ଖିଲି —
ସେଦିନର ଆକାଶର ତାରା
ହସେ ଝିଲି ମିଲି —
ସେଇ ଧୂପ ଜଳୁଛି —
ପଥପରେ ଆଲୋକକୁ ବିଞ୍ଚି ।

## ନାଗାବଳୀରେ ବନ୍ୟା

ପ୍ରିୟ ମୋର ନାଗବଳୀ—
ଅନ୍ତରର ସ୍ନେହ-କରପୁଟେ
ଭରିଚୁଲୁ ସ୍ମୃତି ପୁଷ୍ପ-କଳ,
ଅର୍ପୁଁ ମୋର ପ୍ରିୟ ନାଗାବାଳୀ ।

ଅଂଗେ ମୋର ଦେଇଅଛୁ ବ୍ୟଥା
ବେଗବନ୍ତୀ ତଟେ ଜାକି ନେଇ,
ଆସିଅଛି ଆଜ ତୋ ସମୀପେ
ଶତ ସ୍ନେହ-ସେତୁବନ୍ଧ ହେଲିଁ ।

ଅଂତରୀକ୍ଷ କଂଠେ ମେଘ ଗାନ
ଶୁଣାଇଛୁ ଆଜି ତୁ ଚଟିମା,
କଂଦାର୍ପି ଚୁ ମନ ଚକୋରରେ
ପୀଡ଼ାଦେଇ ପୀରତି ବନ୍ଧନ ।

ଶ୍ରାବଣିକା ବହିଯାଏ ଆଜ
ଝଡ଼ ଉଠେ ଗର୍ଜ୍ଜ ବୁକେ ଯୁଝେ,
ମେଘାଂଚଳ ବାତ୍ୟା ପ୍ରତିଘାତେ
ଜଳଷୀର ଢ଼ାଳି ମାଟିମୁଖେ ।

ଉଡ଼ିଯାଏ ପକ୍ଷୀ ତା' ନୀଡ଼ରୁ,
ଡେ଼ଣା ଦୁଇ ବିସ୍ତାରିତ କରି
ଖସିପଡ଼େ ଖାଦ୍ୟ ତା'ଥଣ୍ଟରୁ ।
ବୃକ୍ଷପଡ଼େ ଝଡ଼ ତୋର ଦେହେ
ନେତ୍ରେ ମୋର ମୋହଲହଡାଇ,

ହତବାୟୁ ସଂଗେ ସ୍ୱପ୍ନନୀଡ
ଖାଇ ଶାଖା ଦ୍ରୁମ ଝମକାଇ;
ଚଉଦିଗେ ବନ୍ୟାର କାକଳି,
ମନସିଂଧୁ ମରୁଭୂମି ପ୍ଲାବି
ବହିଯାଉ ପ୍ରିୟ ନାଗାବଳୀ ।

ନଭତୋଳେ ମର୍କତ ମୀନାର
• ଅନାଶଷ ବାରବାହ ଘରେ,
ଶୁଣିଅଛି ଏକାଳେ ବରଷା
ତାନସେନ ରାଗିଣୀ ମଲ୍ଲାରେ ।

ତୋର ଛାରେ ଗୁଳାଟ ପ୍ରେୟସୀ
ଗୀତ ଫୁଟିଉଠେ ଗୁରୁ ଗୀରେ,
ଗଣ୍ଡ ତଳେ ଲଂବିତ କୁଂତଳ
ଅବଚ୍ଛିନ୍ନ ଧାର ଜଳକ୍ଷରେ ।

ଅଶ୍ରୁତର ପରାହତ ସେନ୍ୟ,
ଝଡ଼ିପଡ଼େ ଚଳପଳ ମାଟି
ଲତାସ୍ତୃତ ମଶଜୀଦ୍ ଦେହୁ ।

ତଟତରୁ ଚୂଳେ କାଦଂବିନୀ
ଗାନକରେ ତୋଫାନ ସ୍ୱଗତ,
ଅତର୍କିତେ ଯାଇଥିଲି ପାଶେ
ଲଭି ତୋର ଅଂତିମ ସ୍ୱାଗତ ।

ସ୍ୱପ୍ନବଶ ସ୍ନିଗ୍ଧ ବେଳା ଭୁଲି
ଏକଦା ଏ ଦୁର୍ଦ୍ଦିନେ କାମିନୀ,
ଛୁଟାଇ ତୋ କଟୀର ମେଖଳା
ବହିଯାଏ ସ୍ରୋତ କଲ୍ଲୋଳିନୀ ।

ଶ୍ରାବଣ ବର୍ଷା ପ୍ରପାତରେ,
ନିରଜନ ରହସ୍ୟ କୁଟୀରେ
ଅମନ୍ତ୍ରିଲୁ ମୋତେ ସ୍ନେହଭରେ ।
ଅଜ୍ଞାତର ମୌନ ଅଭିସାରେ
ରଖି ମୁହିଁ ଆସିଛୁ ଗୋ ବେଣୁ,
ତୋର ଉରସ୍ଥଳେ ଥାପି ମଥା
ଦୁଃଖ ମୋର ପାଶୋରିବା ପେଣୁ ।

ଭୁଲିଥିଲି ଯଉବନ ମୁହିଁ
ସ୍ୱପ୍ନବଶ ଶ୍ୱେତାଂବୁଜ ସମ,
ବିଭୁଦତ୍ତ ବେଣୁ ଆପେ ବାଇ
ଶତ୍ରେ ଲଭି ସୁଂଦର ପରମ ।
ସେଇ ନିଶି ବେଳୁ ଆସିଅଛ
ବିକଶିତ ହୁଏ ଉଷାକଳି,
ପଥ ପାର୍ଶ୍ୱେ ପଦ୍ମପାତେ ପାତେ
ଦେଇ ତୋତେ ଶର ଜଳାଞ୍ଜଳି ।

ଫେରିଅଛି ବେଦନା ପରଶେ,
ତୋର କୂଳେ ତାରୁଣ୍ୟ ସଂଭାର
ବିତାଇ ମୁଁ ଯଦ୍ଦର ଉଦାସେ ।

ସଚକିତେ ଛୁହିଁ ତୋ ଅଂଗରେ
ନିଦ୍ରାମଗ୍ନ ନାଗରିକ ଗଣେ,
ମାଣ୍ଡପାଇ ପ୍ରଣୟ ଉଚ୍ଛ୍ୱାସେ
ପ୍ରୀତିକେଳି କରନ୍ତି ଶ୍ରାବଣେ ।

ଢେଉ ତୋର ଭାଂଗି ଗଲେ ବାଟ;
ଆଲୋଡ଼ିତ କରି ସୁପ୍ତି-ମଂଗ
ଉଚ୍ଛୁଳାଇ ସିକ୍ତ ବାଲୁପାଠ ।

ଯାତ୍ରା ଆଜ ଆରଂଭିଛି ମୁହିଁ,
ଝର ଝର ନଇବାର ଝରେ
ଗିରିବର ଉରଜାଗ୍ର ଦୁଇଁ ।

ବନ ତଟ ଜଘନକୁ ବାଜ
ବନ୍ୟା ଆଜ ତୁଂଗ ପରିସ୍ଫୀତ,
ପବମାନ ମୁହୁର୍-ମୁହୁର୍ ଘାତେ
ପିଂଗଳ ତୋ ଊର୍ମି ଅବନମିତ ।

ମନ ମୋର ଭଜେ ଅଥବତା
ଶୁଷ୍କ ତପ୍ତ ସଇକତ ସମ,
ଏକଦା ଯା'ଥିଲା ରୂପବାନ
ଆଜ ତାହା ବିରୂପ ବିଭ୍ରମ ।

ଥରଉଠେ ଶଂଖର ପ୍ରାଚୀର,
ନାଗାବର୍ଲୀ ବନ୍ଧିଯାଏ ଝରେ
ଫୁଟାଇଚା' କଂଠେ ମଂଦ୍ରଗୀର ।

ପଶ୍ଚିମର ଶିଙ୍ଗୀ ଢେଉଁ ଫେରେ
ମ୍ଳାନସିକ୍ତ ତମ୍ପ ଅଭିଆଡ଼ୀ,
ସ୍ରୋତସ୍ୱିନୀ ବୁକେ ମାରି ଡେଣା
ଭ୍ରଷ୍ଟ ହଂସ ଯାଏ ନଦୀଗ୍ଳାଡ଼ ।

ଉପଙ୍ଗାବ୍ୟ କର ଛଂଦାପାଦେ
ଦୃଷ୍ଟି ପଡ଼େ ଶ୍ରେଣୀ ପରସ୍ଥିତେ,
ଚିତ୍ରେ ଭରି ଶଂକିତ ସୌହାର୍ଦ୍ଦ୍ୟ
ମୁଗ୍ଧାଙ୍ଗୁଳେ କଣ୍ଠୀ ନର୍ପିଡତେ ।

ହୃତଅଂଗେ ଯଉବନ ମୋହ,
ଉପତ୍ୟକା ଆର୍ଦ୍ର ଆସ୍ତ୍ର କୁଂଜେ
ଥରଉଠେ ବତାସର କୋହ ।

ନାଗାବଳୀ କାନନ କୁଟୀରେ
ବର୍ଷାତାର ହଜାଏ ସଂଭ୍ରମ,
ହଦେ ଯାହା ଥିଲ ସଂଗୋପନେ
ଝଟିଥିଲା ମର୍ମଗୀତ ସମ ।

ଧୂସରିତ କୁବଳୟ ବୁକେ
ପୁଣି ଏକ ଶଂକିତ ମୃଣାଳେ,
ଜନହୀନ ଧଇକତ ପଥେ
ଅଭିଭୂତ କେଉଁ କ୍ଷୀଣ କାଳେ—

ପୁଣି ଏକ ବେଣୁର ବିଳୟୁ,
ନାଗାବଳୀ ମଳ ବାରିବାହ
ଅବତରେ ଭୂଧର ପ୍ରଶ୍ରୟୁ ।

ପ୍ରିୟ ମୋର ନାଗାବଳୀ ଭୁଇ
ଓଗାଳିକୁ ଆଜ ମୋର ବାଟ,
ଶ୍ୟାମଳିତ ଶସ୍ୟ କେଦାରରେ
ଖେଳ ଉଠେ ମାନଜଳ ଥାଟ ।

ମନେ ମୋର ଭରନ୍ତୁ ଦୋହଦ
ମେଘଚୁଟଳେ ସହସ୍ର ଶୋଚନା,
ସୀମନ୍ତିନୀ ନେତ୍ର-ନୀର-ପରି
ବହେ ଝର ନର୍ଝର ବେଦନା ।

ଫୁଲଉଠେ ବେନି ଗୁରୁକୂଳ,
ନଗରୀର ଉତ୍କଂଠ ଶ୍ରେଣୀ
ବନ୍ୟାକରେ ଯାତ୍ରା ଅନୁକୂଳ ।

ସ୍ନାନସିକ୍ତା ଷୋଡ଼ଷୀ ଗମଇ
ହସ୍ତେତାର ବାଜଇ କଂକଣ,

ଅନ୍ତରର ବେଣୁରାଗେ ଜାଗେ
ଝଡ଼ବାତ୍ୟା ମଂଜୀର ନିକ୍ୱଣ ।

ମନେ ହୁଏ ଏକଦା ସେ ଥିଲ
ଏଇବଂଶୀ ସଦ୍ୱୋଗ ସୁଆଗି,
ଷଡ଼ଋତୁ ବର୍ଣ୍ଣ ବିଭାନ୍ତନେ
ଯାଇଥିଲ ଅନୁରାଗ ମାଗି ।

ବଢ଼ି-ଚଳେ ହୁଡ଼ାମାଟି ଦଳ,

ଫଳଫୁଲେ ଶସ୍ୟର ଫସଲେ
ପତ୍ର ପ୍ରାଂତେ ଧାପ ଉଠେ ଜଳ ।

ନାଗାବଳୀ ସୁରଭି ସଂଖାଳ
ଉଗ୍ରବନ୍ୟା ବିପ୍ଲବ ଗାୟନେ,
ଆସୁଅଛୁ ତୋହରେ ସଂଖୋଳ
ଶ୍ୟାମାପ୍ଳୁତ ଉପତ୍ୟକାସ୍ଥନେ ।

ବର୍ଷାଋତୁ ଶଂଖେ ଭରି ସ୍ୱନ
ବହିଯାଉ ଉଚ୍ଛ୍ୱସି ଏ ଧରା,
ବନସ୍ପତି ଶାଖା ଦେହେ ବାଜେ
ବର୍ଷାପାତ ପ୍ରଣୟ୍ନ ଅସହ୍ୱା ।
ନାଗାବଳୀ କରେ ବନ୍ୟାଗାନ
ଚିରିବଣ ନଦୀ ସ୍ରୋତ ବହେ
ସେଇ ମୋର ଗତକଥା କହେ ।

---

## ଉପେକ୍ଷିତା

ଆଷାଢ଼ର ଝରସିକ୍ତ ଶୈଳ
ଖୋଲେ ମାନ ରୁଚିର କୁଂତଳ,
ଗୃହୁ କେକୀ କଂଠୁ ନିଃସ୍ୱରଇ
ବର୍ଷଣ ଉଷାର ସଂଗୀତ ଉଜ୍ଜଳ ।

ଉଛଘଂଚ ବନସ୍ପତି ଡ଼ାଳୁ ଉଡିଆସି
ଆକସ୍ମିକେ ମେଲେ ବର୍ତ୍ତିଳ କଳାପ
ପ୍ରାବୃଟର ନବ ସମାଗମେ,—ଉପତ୍ୟକାହୃଦେ
ନୃତ୍ୟରତେ କେକୀ ଠେକ ମନୋଜ୍ଞ କଳାପ
ଅପୂର୍ବ ସହଚରୀ—ପ୍ରେୟସୀଗୋ
ମେଘାବୃତ ପରଭାତେ କଳାପୀ ସହବଷେ
ଗାଅବାରେ ତୁମର ଓ ମୋର
ଶୈଳ ଶିଖୁ

ଉଦ୍ଦାମ ମିଳନ ଗୀତ ମୋଦେ
ପ୍ରଶଂସାରେ ଅବା ଅପବାଦେ ।
ଭ୍ରଷ୍ଟ ପଥେ ନଉକା ଚଳାଏ
ଯଉବନ ଉଗ୍ର ଖରେ ଖସେ
ବହୁବାର ଉପେକ୍ଷିତ ମୁହିଁ-ଯୁବକ ନାଉରୀ
ତଉଦଗେ ବନ୍ଧ୍ୟଲତା ହସେ
ଫେରାଇବ ଶୂନ୍ୟକର ଭିକ୍ଷାଥାଳ
ଆକାଶ ଲଲାଟ ପଟେ ବହ୍ନି ରୋଷ
ଶ୍ରାନ୍ତ ହୃଦେ ଅଭିମାନ ଶୁଣିବାର ପାଇଁ
ନାହିଁ ତବ ଅବକାଶ,
ଖେଳି ଉଠେ ମେଘର ଅଳକ —
ତୁଙ୍ଗ ଗିରି ଚୂଳେ
ମେଘ ଯାତ୍ରା କରେ ଅନୁକୂଳ
ଲାଗେ ମୋର ଚିତ୍ତରେ ବେଦନା ।
ଅୟି ସଖି !
କଦମ୍ବ କୋରକ ମୁଦ୍ରିତ ସଂପୁଟେ
ରଖିଥିଲି ତମ ପାଇଁ
ଏକ ଅତି ଗୋପନୀୟ କଥା
ଗ୍ରହଣ ନକରି ଦୂରେ ଦେଲ ଫିଙ୍ଗି ତାହା —
ଶୀପ୍ରା ତଟିନୀରେ
ବହିଯାଏ ମରଦ ନଉକା,
ଆଗୋ ଉପେକ୍ଷିତା
ଏଇ ମୋର ଜୀବନ-କମଳ
ଫୁଟି ଅଛି ତମ
ଉଦାସ-ମୃଣାଳେ —

---

## ଏକବୃନ୍ତ ତିନିକଳି

ମୋର ଧର୍ମପତ୍ନୀ—
ଗୀତା, ଚିତ୍ରା ଓ କବିତା ।

ପ୍ରଥମ ଗୀତା
ଅଂଜଳିରେ ଆଶ୍ଚର୍ଯ୍ୟର ଫୁଲ ଭରି,
ଜୀବନର ପୂର୍ବାଶାରେ
ବିବସ୍ତ୍ରାଂତ କରି ସେଥିଲା—
ନୂତନ ସବିତା ।

ତାର ଆଗମନେ, ସୁପ୍ରଭାତେ—
ଶ୍ୱେତ ପଦ୍ମ ମେଲିଥିଲା
କଅଁଳ ପାଖୁଡ଼ା
ତାର ଦୋହଦରେ
ଅଂକୁରିତ ତରୁଲତା

ନବ ମଞ୍ଜୁରିତ ହୋଇ ଉଠିଥିଲେ
ଆମ୍ର କାନନର କୁଞ୍ଜେ
ମେଲି ଚପଳବତ ଆଖିପତା ।
ତାର ଅଙ୍ଗୁଳି ପରଶେ
ବାଜି ଉଠିଥିଲା
ବଂଶୀର ପ୍ରଥମ ତାନ୍
ପ୍ରଥମ ଗୀତ
ଅବିକଳ ସ୍ୱର ।
ତାକୁ ମୁଁ ସ୍ପର୍ଶି ଯାଉଥିଲି ଭଲ
ଦୁଇ ବର୍ଷ ତିନି ମାସ ପରେ
ସେ ଗଲା ଅଜଣା ମହଲ ।
ଏକ କ୍ଷିପ୍ର ଅଣ୍ଡାର ଅନ୍ତରାଳେ ବସି
ସେ କାନ୍ଦିବାର ଶୁଣାଗଲା ମୋତେ ।
ଦୁଇବର୍ଷ ତିନିମାସ ପାଇଁ ମୋଠେ
ବୁନ୍ଦା ବୁନ୍ଦା ଲୁହ
ତା' ଆଖିରୁ ଝରିଲା ବାଷ୍ପ ଆଉ କୋହ ।
ବେଣୁ ମୂର୍ଚ୍ଛନାର ଶେଷସ୍ୱର ପରି
ଦେଇଗଲା ଏକ ଅବ୍ୟକ୍ତ ଝଙ୍କାର
ସେ କଏ ନୁହେଁ
ଏକ ବିହଙ୍ଗ ପକ୍ଷ ମେଲି ନଥିବାର,
ତା ପାଇଁ ତୋଳି ଦେଲି
ନୁହେଁ ଧବଳ ମର୍ମର ସୌଧ
ଏବଂ ଏକରମ୍ୟ ତୈଳ ଚିତ୍ର
ତାହାହିଁ ତାର ପ୍ରତି ହେଉ
ଅନ୍ତିମ ସମ୍ମାନ
ଚରମ ବିଚିତ୍ର
ପୂର୍ବାହ୍ନର ଉତ୍ତପ୍ତ ପ୍ରହରେ
ଚିତାଭସ୍ମ ହେଲା ମୋର ଭେଟ –

ଏକ ନିର୍ଜନ କୋଠରୀ ଭିତରେ
ବସିଥିଲି ଏକାକିନୀ
ଏକ ସୁସଜ୍ଜିତ ପଲଂକର ତଟେ,

ଉପଲବଧି କଲି ମୁହିଁ
ତାର ଏକାଂତ ଆତ୍ମ ସମର୍ପଣ,

ପର୍ବତର ଏକ ନିର୍ଝରିଣୀ ପରି
ତାର ଶରୀର ସୁଷମା
ଯାଉଥିଲା ଝରି,

ମୁଖଶିର ଠାରୁ ପଦପ୍ରାଂତ ଯାଏ
ତନୁଯଷ୍ଟିରେ ଆବୋରି ।

ସଂବେଦନ ଶୀଳ ତାର ଆନତ ଗଭୀର
ଦୁଇ ବା ତିନୋଟି କେସ୍ମିନ୍ ଫୁଲ୍
ମୋର ସ୍ପର୍ଶ ପାଇ ଉଠୁଥିଲେ ଫୁଟି
ତା' ଦେହର କସ୍ତୁରୀ ସୁଗଂଧ
ଏହା ମୋର ଆନଂଦର କାମ୍ୟ
ମୋର ପଦକୂଳେ ପଡୁଥିଲା ଲୋଟି
କାନନ କୁରଂଗୀ ମେଲିଥିଲା
ଆପ୍ଲୁତ ନୟନ
ବୁଝାଉଥି ବ୍ୟସ୍ତ କରି
ଧାଉଁଥିଲା ଇତସ୍ତତ ମନ ।

ମୋର ପ୍ରାଣ ପ୍ରିୟା ବିଶ୍ୱାସୀ
ଅନାଇଲା ସେଇ ଦିଗେ
ମୁଁ ବୁଝିଲି ତାର ସେଇ ଦୃଷ୍ଟି ପତନରେ
ଅଛି ଶତ ନିବେଦନ
ବିନମ୍ରରେ ସେ୍ନହ ମୋର ମାଗେ,

ବସଂତର ଶାଖାପରେ ଅଗଣିତ ପୁଷ୍ପଧରି
ପୁଲକିତ କଲା ମୋର ହର୍ମ୍ୟକୋଳ
ମୁଠା ମୁଠା ଫଗୁଧରି
ମସୃଣିତ କଲା କରତଳ ।
ଚଇତର ନିସ୍ୱ ଶାଖାପରି
ସକଳ ପ୍ରାଚୁର୍ଯ୍ୟ ସତ୍ତ୍ୱେ
ନିସ୍ୱ ହୋଇ ଝଡ଼ିଲା ଭୂତଳ
ମୋତେ ତାର ଅବଦାନ ନାହିଁ କିଛି,

ହତଭାଗା ବନ୍ଦୀ ପ୍ରହରୀ ସମ
ଶୂନ୍ୟ ଗଂଡାଘର ମୁହିଁ ଜଗିଅଛି ।

ବିତିଗଲା ବର୍ଷ ଓ ବର୍ଷ
ଚିତ୍ତ-ମଣ୍ଡେ ବିରଚିଲା ମହୁମାଛି
ଜାଲ-ଫଣା ବିଷମ ବିମର୍ଷ
ମନ-ତରୁ କୋଟର ଗହ୍ୱରେ
ହଜିଗଲା ସ୍ମୃତି-ପ୍ରଜାପତି

ଉଡ଼ି ଉଡ଼ି ମେଲିଇତା'
ସୁଚିତ୍ରିତ ମଖମଲି ଡେଣା
ତହିଁ ଅଂକାଥିଲା ଜୀବନ ଚକ୍ରର
ଚକ୍ ଚକ୍ ଚକ୍ରାକାର
କଳାଧଳା ଫୁଲର ଭଉଁରୀ
ଲାଗୁଥିଲା ଭଲ ଏକାକୀ ଜୀବନ
ବୁଝିଥିଲି ନୈଃସଂଗ୍ୟର ମୂଲ୍ୟ ।

ଇତିହାସ ନେଇଥିଲା ବରି
ମୋର ଗାର୍ହସ୍ଥ୍ୟ ଜୀବନ
ସେ ଥିଲା ଏକ ଅଧ୍ୟୟନ ।

ହଠାତ୍ ଏକ ଉନ୍ନିଦ୍ର ନିଶିଥର ଶେଷ ପ୍ରହରରେ
ଶତାବ୍ଦୀର ପ୍ରାଚୀର ଭାଂଗି,

ଆସିଲକ ଉଡ଼ି ଏକ ଅଜଣା ବିହଂଗୀ
ସେ ତାର ଚୁପ୍ ଚୁପ୍ ସ୍ୱରେ
ଶରତର କାଶତଣ୍ଡି ଫୁଲ ଭଳି
କର୍ଣ୍ଣ କୁହରେ କହିଲା ସଧୀରେ
ମୁଁ ତୁମର "ନୂତନ ରଥାଙ୍ଗୀ"

ସେ କଏ ନୁହେ-କବିତା ।
ତାର ଆସିବା ମାର୍ଗରେ ସେ ଦେଖୁଛି
ଦୁଇଟି ଜ୍ୱଳନ୍ତ ଦଗ୍ଧଚିତା,

ଷୋଳ ଗୋଟି ବସନ୍ତଋତୁ

ଦେଖିଛି ସେ ଜୀବନ ବେଦୀରେ,

ସେ ଦେଖିଛି ବସନ୍ତରେ
କେଉଁପରି ତରୁ ଡାଳେ ଫୁଲଫୁଟେ
ସେ ଶୁଣିଛି ବସନ୍ତରେ
କେଉଁ ସ୍ୱରେ ପିକ କଣ୍ଠୁ ସ୍ୱନ ଉଠେ ।

ସମୁଦ୍ରର ନୀଳ ଆଖିପର
ଦୁଇଆଖି ସୁଡ଼ୌଳ ସୁନ୍ଦର
ସେ ହସେ ସ୍ମିତହାସ
ସେ ହସରେ ନୂତନ ଜନ୍ମର ଶୀତଳ ପ୍ରକାଶ ।

ବିଦଗ୍ଧ ଚତୁରୀ
ସୁବିଶାଳ ଭାଲପଟେ ଶୋଭେ
ନିର୍ମଳ ଆକାଶ-ଦେହର ମାଧୁରୀ ।

ସେହିଁ ଅ.ପୂଷ୍ଣା
ମୋର ସିଂହାସନ ମଣ୍ଡି

ଅଠରଟି ବର୍ଷ ଗଲ୍ଣିତ ବିତି –
ଆଜପର ଲଗେ ଆମର ମିଳନ,

ନୂତନ ରଥାଙ୍ଗୀ ସେଇ ମୋର
ଆମ ମଧ୍ୟେ ନାହିଁ
ରାତ୍ରିର ବିଚ୍ଛେଦ ଦାହନ

---

## ଦଗ୍‌ଧ କୋରକ

ନିତ୍ୟତମ ନେତ୍ର ଦ୍ୱୟୁ ଅଶ୍ରୁଝର ଝରେ,
ଆହେ ମୋର ଦଗ୍‌ଧ ତନ୍ୱୀ ଦୁଃଖି ନିରନ୍ତରେ ।

ଅଭାଗା ରଥାଙ୍ଗୀ ତମେ ପ୍ରିୟ ଗଲ କାହିଁ ?
ବାହୁଡବ ସେତ ନାହିଁ ଆଉ ତମ ପାଇଁ ।

ଖସିଅଛି କରତଳୁ, ସୁବର୍ଣ୍ଣ ବଳୟ,
ଲଲାଟ ପଟୁ ସିଂଦୁର ହୋଇଛି ବିଲୟ ।

ଚିତ୍ତ-ସରେ ମଉଳିତ ମଳିନ ସାରସ;
ନାହିଁ ଆଉ ସେଦିନର ଅପୂର୍ବ ସରସ ।

ଅଭାଗିନୀ ତମେ ପ୍ରିୟ-କାନ୍ତ ସବରହେ,
ପ୍ରିୟର ବିଚ୍ଛେଦ ତମ ପ୍ରାଣ-ପକ୍ଷୀ ଦହେ ।

ନିତ୍ୟ ତମ ପ୍ରାଣ-ପାତ୍ରୁ ଉଠେ କୋହ ଧୂପ,
ଚକ୍ଷୁ ଆଗେ ନାଚି ଉଠେ କାନ୍ତ ମୁଗ୍ଧ ରୂପ ।
ବାସ୍ତବ ସେତ ନାହିଁ ଆଉ ତମ ପାଶେ,
ଜୀବନ-ପ୍ରଦୀପ ଜଳେ ଅନ୍ତିମ ହତାଶେ ।

---

## ପ୍ରଣମାମ କାଳିଦାସ

ଶୀପ୍ରା ନଦୀ ସନ୍ନିକଟେ ଶୋଭେ
କାଳିଦାସ ପଲ୍ଲବ କୁଟୀର,

ଅଂବୁଦ ଶଙ୍ଖର ପର୍ଯ୍ୟାପ୍ତ ନିନାଦେ
ସ୍ରୋତ ବନ୍ଧେ ବିଧଉତ କରି
ସୁବିଶାଳ ଜଘନରେ ନୀର ।

ଏ ସମୟେ ଯକ୍ଷବଧୂ ବୀଣାଦଂଡେ ଥାପି ମଥା
ପ୍ରିୟ ପାଇଁ କାଂଦେ,

ମୁମୂର୍ଷୁ ବସୁଂଧରା ଉରସେ
ମୁକୁଳିତ କେଶ ନାହିଁ ବାଂଧେ ।

ଆସିଅଛି ଆଦ୍ୟ ବଳାହକ,—
ରାମଗିରି ଶୀର୍ଷ ଶିଳା ଅଙ୍ଗେ
ବିଦ୍ୟୁତର ଅପୂର୍ବ ଝଲକ ।

ମେଘ ଉଠେ ବରଷା ଉତ୍ସବ, —
ଆକାଶରୁ ଭସି ଆସେ ଧିରେ
ବିପ୍ରଲବ୍‌ଧା ସାରଙ୍ଗର ରବ ;

ବନସ୍ଥର ମଧୁର ନନ୍ଦନେ
ପକ୍ଷ ଡାକେ ପ୍ରିୟେ ସଙ୍କେତେ,
ବିରହିଣୀ କରେ କଳପନା ; —
ମେଘ ଚଳେ ଲଂଘିତ ବିମନେ !

ଦୂରେ ଥାଅ ପ୍ରିୟତମ ମୋର
ଭାଲ ଭାଗ୍ୟ ଭୋଗି'
ଅଛି ମୁହିଁ ବିରହର ରୋଗୀ ।

ବିଚ୍ଛେଦର ପାଶେ ଅଛି ମୁହିଁ
ସର୍ଜ୍ଜି ବନୁ ବାଟପଡେ ଝଟି,
ରାମଗିରି ପାହାଡ଼ କୋଠରେ
ଖେଦାନତ ମିତ୍ରୁମାଣେ ବସି ।

ନିଷ୍ଠୁରତ ହୋଇଲ ଗୋ ତମେ
ନ କହିଲ ବାରେକ ବଚନ,
ନ ଲେଖିଲ କାବ୍ୟ ବା ମୋ ପାଇଁ
ଚାଉଁ ତବ ଅଛ ସଂଗୋପନ ।

ପ୍ରବଞ୍ଚକ ହୋଇ ତମେ ସଖା
କଲ ମତେ ଚିର ପ୍ରତ୍ୟାଖ୍ୟାନ,
ଆରମ୍ଭିଲ ନାହିଁ ଅବା କାବ୍ୟ
କଂଷଣର ଖେଦ ଉପାଖ୍ୟାନ ।

ଶୈଳାଳୟେ ଉଦାସୀ ମୁଦ୍ଦର,
ସୁଗମ୍ଭୀର ଆସନ୍ନ ପ୍ରଦୋଷ
ଫିଟାଏ ତା' ଚିକୁର ଚୁଟିର ।

ମାନସରେ ଏକାଳେ ଫୁଟଇ
ପଦ୍ମଫୁଲ ଶୁଭ୍ର ଉରଷୀରେ,
ତମ ପାଇଁ ଅପେକ୍ଷା ମୁଁ କରେ
ବାଟ ଜଗି ନିର୍ଜ୍ଜନ କୁଟୀରେ ।

ମଞ୍ଜୁଆଳି ଷଟପଦ ଭୃଙ୍ଗେ
କୁବଳୟ ମରନ୍ଦ ଯାଉଁଛି,
ପ୍ରଣୟକୁ ଆସ୍ୱାଦନ କରି
ଆସିନାହିଁ ଆଉତ ଲେଉଛି ।

ଅଭିଜନ କର୍ମା ମୁଁ ନମଳି,
କାଳିଦାସ ବ୍ୟଥାରଞ୍ଜି ବାଢେ
କଳ୍ପନାର ମେଘ ମଖମଲି ।

ଉଜ୍ଜୟିନୀ ସୌଧ ଚୂଡ଼ା ଛୁଇଁ-
ହଂସଶ୍ରେଣୀ ଥଣ୍ଟେ ଧରି ପଦ୍ମ
ଉଡ଼ିଯାନ୍ତି ଶ୍ୱେତବକ୍ଷେ ନୁଲି ।

କ୍ଷୁଦ୍ର କଣ୍ଠେ କହେ ମୁଁ କେବଳ
ଆସିଅଛୁ ଆଜ ପରବାସେ,
ଉଜ୍ଜୟିନୀ ନଗରୀର କଥା
ରାମଗିରି ଭାଷେ ମୃଦୁହାସେ ।

ଭାଙ୍ଗିଅଛୁ ଯକ୍ଷପୁରୀ ମାଡ଼
ଲଭଇ ମୁଁ ଦେଇଅଛୁ ସ୍ମୃତି,
ଶୀପ୍ରାନଦୀ ସଇକତେ ରାଜେ
କାଳିଦାସ ଶିବର ସଂସ୍କୃତି ।

ଶୀର୍ଣ୍ଣକରୁ ଖସଇ ବଳୟ,
ମେଘ ହାତେ ପଠାଉଛି କବି
ଯକ୍ଷବଧୂ ସମୀପେ ପ୍ରଣୟ ।

ଜୀର୍ଣ୍ଣ କଣ୍ଠ ଅପର ପୀରଣ୍ଡ
          ଅଭିସାର ରଚେ ହୃଦ-ରାଣୀ,
ସମ୍ମାରଣ ସଂବେଗ ଲଳସେ
          ମୃଦୁ ମୃଦୁ ସଂଭାଷଣେ ବାଣୀ ।

ବର୍ଣ୍ଣଆଭା ଭରେ କାଳିଦାସ
          ମହାକାବ୍ୟ ଗଗନ ଚୁମ୍ବନେ,
ଅଭ୍ର ବନ୍ଦୁ ଖସିପଡ଼େ ଧିରେ
          ବିରହିଣୀ ବଧୂର ଆନନେ ।

          ଖାଟେ ଦୃଶ୍ୟ ଏକାନ୍ତ ଶିଖର,
ଉତ୍କର୍ଷିମା ହର୍ମ୍ୟୁ ଉଠେ ଧୂପ
          'ମେଘଦୂତ' ମହାକାବ୍ୟ ଗୀର ।

ହଂସଯୂଥ କାସାର ତଟରେ
          କରେ ଶ୍ଳେଷ ମୃଣାଳ ବ୍ୟାଖ୍ୟାନ,
କାଳିଦାସ ଲେଖନୀରୁ ଝରେ
          କାବ୍ୟ ଧାରା ଚିର ଆମ୍ଳୁଷ୍ଠାନ ।

ଶ୍ୱେତ ଗ୍ରୀବା ରୋମାଞ୍ଚିତ ଗାତ୍ର
          ପରସ୍ପର ନିବିଡ଼ ବଂଧନ,
ବନସ୍ପତି ତଳେ ଅଭିସାର
          ସଉହାର୍ଦ୍ଦ୍ୟ ପ୍ରଣୟ କଂପନ ।

          ଏସନେ ଏ ପଡ଼ିଥାଉ ତଟେ,
ସରୋବରୁ ଶ୍ୱେତ କ୍ରୌଞ୍ଚପୁଂଜ
          ଉଡ଼ିଯାନ୍ତି ନୀଳ ନଭ ପଟେ ।

ତମେ କେବେ ଯାଇଥିବ ଭୁଲି
          ଛନ୍ଦା ହୋଇ ବ୍ୟାରଦ ବଳୟେ,
ଥିଲି ମୁହିଁ ପ୍ରିୟର ନାଗରୀ
          ବର୍ଷାଋତୁ—ସମାଗମ ଲୟେ ।

ଅଂତରୀକ୍ଷ ମେଟଳା ଉ୍ଭଠାଇ
ପଠାଇଛୁ ମୋ ପାଶେ ସଂଦେଶ,
ଛାୟାବୃତ ତଟିନୀ ଜଘନ
ବ୍ଭୁ ନୀଳ ଜଳ କୃଷ୍ଣ କେଶ ।

ଉତପ୍ରେକ୍ଷା ବର୍ଣ୍ଣିକ ସୁରଙ୍ଗେ,
ଚକ୍ଷୁ ସ୍ତ୍ରାନ୍ତ ନନ୍ଦିତ ଅଂଜନ
ପରସ୍ପର କୁଟିଳ ପ୍ରସଙ୍ଗ ।

ଆଷାଢ଼ର ଉଜ୍ଜ୍ୱଳ ମୁହୂର୍ତ୍ତେ
ଆସିଚି ମୁଁ ନିମନ୍ତ୍ରଣ ପାଇ,
ସମୁନ୍ନତ ଶୀର୍ଣ୍ଣ ଶିଳାଘାଟେ
ଅବରୁଦ୍ଧ କବାଟ ମେଲାଇ ।

ମନୀଷର ଦଗ୍ଧ ଇତିହାସ
ଜାଣିବାକୁ ଡିଉ ଅବା କାହିଁ,
ଯକ୍ଷବଧୂ ଦୁଃଖ ଅନୁସର
ମେଘକାବ୍ୟ ଦେଇଛୁ ବନାଇ ।

ସ୍ୱପ୍ନହୀନ ବାସ୍ତବ ଏ ସତେ,
ବହୁବାର ଆସି ଫେରିଲଣି
ତମେ କବା ଯାଅନା ପରତେ ?

ସ୍ୱ-ଅକ୍ଷର ସୁବର୍ଣ୍ଣ ସଂକେତେ
ଅବକାର୍ଣ୍ଣ ପଦ୍ମ ଉତ୍ତରଣେ,
ଶ୍ୱେତ ଶଙ୍ଖ ଶିଖି ପରସ୍ତୋମେ
ଭୃଙ୍ଗ କର ଭୁଣ୍ଡିଭ ଗହଣେ ।

ନକାଞ୍ଚନ ବରନ୍ତ ଷଧ୍ୱଶ୍ମ
କାମ କୋଟି କ୍ଷୁଦ୍ର ଦେହଶୀର୍ଣ୍ଣ,
ଯାଇଥିଲ୍ କପୂଦଂଶ ବାର୍ତ୍ତା
ସମନ୍ୱୟ ଦୁଇ ସମାକୀର୍ଣ୍ଣ ।

ନୁହେଁ ଏତ ଯୁଗ ଉପହାସ,
ଆରଣ୍ୟକ ମାଲ୍ୟ ଉକ୍ତସୂମ
ରଚେ ସ୍ୱର୍ଣ୍ଣ-ହର୍ମ୍ୟ କାଳିଦାସ ?

ବୋହିଯାଏ ମନ୍ଥି ଶିଳା ରେବା
ବନ୍ଧ୍ୟ ନଗେ ଉପହାର ପାଇଁ,
ଚିତ୍ର ଟଂକେ ହୋଇଛି ଟଙ୍କିତ
ଲେଖାଗଲ୍ କାବ୍ୟ ବା କା' ପାଇଁ ?

ବହୁବାର ପଢ଼ି ଉଠେ ପୁଣି
ଆଣିଅଛି ସଂକେତ ବିସ୍ତୀର୍ଣ୍ଣ,
ଏ ଯୁଗର ବାର୍ତ୍ତା କହେ ମେଘ
କରି କବି ଅଂତର ବିଦୀର୍ଣ୍ଣ ।

ଯକ୍ଷିଣୀକୁ ରଖି ଦ୍ୱାରମୂଳେ,
କାଳିଦାସ ଅନ୍ତର ବିଦଗ୍ଧ—
ମେଘ ସ୍ତବ୍ଧ ଶ୍ଳାଘିମା ଗାୟୂନେ ।

ବଳାକାରସ୍ତ୍ରକ ଆଭରଣେ
କଣ୍ଠେ ଲମ୍ବ କଦମ୍ବ ପ୍ରସୂନେ,
ଝାଡ଼େ ଯେହ୍ନେ ବିଦଗ୍ଧ ଲେଖକ
ଲସ୍ତ୍ର ହୋଇ ଲିଖନର ମୂଳେ ।

ତେସନ ଏ ଜୀବନକା ସ୍ତୁତ୍ର —
ଯାଇଅଛି ଝଂର ପଳେ ପଳେ,
ଇନ୍ଦୀର୍ଦ୍ଦୀର ଗୃଷ୍ଟ ମନ୍ଦାକ୍ରାନ୍ତେ
ଶ୍ରେଷ୍ଠ କବ ଗୃହେ ଧୀପ ଜଳେ ।

ଜପୂ ଲଭୂ ସଂଦେଶ କବର,
ଉତ୍କ୍ରପ୍ତି ମଂ ଦ୍ଵର୍ମୈଧ ଜଳୁ ଧୀପ
ଆଲୋକିତ କର
କାଳିଦାସ ସଂସ୍କୃତି ଟିବର ।

---

## ଛିନ୍ନବୃଂତ

ତୁମେ କପାଁ କହ ପ୍ରିୟତମା ମୋର
'ଉଦାସ କବିର ବ୍ୟଥା,'
ବିଶ୍ୱ ପ୍ରଣୟେ ମୁଗ୍ଧ ସଜନି
ମୁହିଁ ସଖି କହେ କଥା ।

ନୁହେ ମୁଁ ଉଦାସ ଅଟେ ଏ ଦେଶର
ପୁଷ୍ପ ପାଶେ ମଳୟ,
ଆତଜାତ ଏଇ ବସୁଧାର କରୁ
ଖସେ ନା କେବେ ବଳୟ ।

ଚିର ସୁଂଦର ଶ୍ୟାମ ପ୍ରକୃତି
ତାରେ କରେ ମୁହିଁ ସ୍ନେହ,
କଂକଣ କଣ କଣ କଣ ବାଜେ,—
ତା'ଠାରେ ବିକଶି ଦେହ ।

ନୃତ୍ୟ ରଚଇ ପ୍ରକୃତି-ସ୍ୱର୍ଣୀ
ପଦଘାତେ ଫୁଟେ ଲୟ,
କାଳ-ସମୀରଣେ ଝଡ଼ିପଡ଼େ ଫୁଲ
ସୃଷ୍ଟି କରେ ଅବଚୟ ।

---

## ସ୍ମୃତି ଓ ସଂସ୍କୃତି

ବେତାର ନିବଂଧ ଶେଷ କରି
ଫେରୁଥିଲୁ ଆମେ ବାପ ପୁଅ,
ରାଜପଥେ ଝୁଲିଥିଲା ମଂଦ୍ରେ
ଜନତାର ଆତଜାତ ସୁଅ ।

ସମୁଦ୍ରର ବୀଚି ପରେ ବୀଚି
ଡାକୁଥିଲା ସେ କେତେ ଝଂକାର,
ବର୍ଷାକାଳ ଭାସ୍କର ମୟୂଖ
ଦେଉଥିଲା ଅଙ୍ଗେ ସିତକାର ।

ଅବ୍ଧିତଟେ ବସନ୍ତ କଣିକ
ବେତାରର ସୁବିଶାଳ ହର୍ମ୍ୟ,
ଦ୍ୱାର ଦେଶେ ଉଚ୍ଚ ଜଗୁଆଳି
ବହୁଥିଲା ସମୀରଣ ରମ୍ୟ ।

ପୁଅ ମୋର କୁଂଦେଂଦୁ କୁମାର
ହାତେ ଧରି ବେହେଲା ମଂଜୁଷା,
ଚୃଲିଥିଲା ପାଂଚ ହାତ ଆଗେ
ପଛେ ଥିଲି ମୁହିଁ ସିକ୍ତ ଭୂଷା ।

ସେଇ ଦଶ ମିଂଟ ତଳେ ମୁହିଁ
ବଜାଇଚି ଶଙ୍କରାଭରଣ,
ତ୍ୟାଗରାଜ କୃତି ଧୁରଂଧର
ସୁବସ୍ତୃତ ପଲ୍ଲବ ଚରଣ ।

ସେନ୍ହାଁ ଶ୍ରୋତୃଗଣ ହାସ୍ୟଭରେ
କହୁଥିଲେ ମୋତେ ସମାଦରେ,
ଶଂକରାଭରଣ ଚଳଚିତ୍ର
ଚୃଲୁହେଲା ଆଜି ଏ ସହରେ ।

ଜନଗହଳିରେ ଚିତ୍ର ଗୃହେ
ଠାବ ନାହିଁ ତିଳେକ ମାତର,
ମୁଠାଏ ସୋରିଷ ବିଗଳିତ
ହେବ ନାହିଁ ସୁଦ୍ଧା ଅକାତର ।

ସୁବିଖ୍ୟାତ ହୋଇଛି କୁଆଡ଼େ
ଏଇ ଚିତ୍ର ଭାରତ ବରଷେ,
ମୋତେ ଯେବେ କହୁଅଛ ବନ୍ଧୁ
ସେଇ ରାଗ ବାଇବି ହରଷେ ।

ଚିତ୍ର ସହ ମୋହର ବେହେଲା
ସାମ୍ୟ କବା କର ମହା-ସ୍ରୋତେ,
ବଜାଇବି ନିଶ୍ଚେ ବଂଧୁବର୍ଗ
ଅନୁରୋଧ କର ଯଦି ମୋତେ ।

ଉପଗତ ଆଜ ମୁହିଁ ବନ୍ଧୁ
ପୌଡତ୍ତୁରେ ଆସନ୍ନ ଜୀବନ,
ଚୌରାଳିଶି ବର୍ଷକୁ ମୁହିଁ
ବୋହିଲା ଏ କରିଛି ବାଦନ ।

ମୋତେ ଯେବେ ହୁଏ ତେରବର୍ଷ
ସେ ମାହେଂଦ୍ର ସେଇ ସ୍କୁଲଗନ,
ସେ ମୁହୂର୍ତ୍ତି ଶୁଭ ଅବସରୁ
କରିଅଛି ବେହେଲା ସାଧନ ।

ବଂଧୁରତ ପଥ ଦେଇ ଆ ମ
ଚାଲିଅଛୁ ବାପ ପୁଅ ବେନି,
ସୁମଂଥର ମଂଦ୍ର ପଦପାତେ
ସ୍ପର୍ଶିଥିଲ ଅବ୍ଧି ହାଓ୍ୱା ଢେନ ।

ଆମ ପଛେ ଦୁଇ ମଦାଳସୀ
ସାଥେ ନେଇ ଭଦ୍ରଲୋକ ଜଣେ,
ସର୍ବମୋଟ ଛଜନାଟି ମଣିଷ
ଚାଲିଛଂତି ମୃଦୁ ସଂଭାଷଣେ ।

ଆଂଧ୍ର ଦେଶ, ଆଂଧ୍ରର ସଂସ୍କୃତି,
ଦେଖାଯାଏ ଆଂଧ୍ର କନ୍ୟା ଠାଣି,
ପରସ୍ପରେ ଆଂଧ୍ର ଭାଷା ଭାବେ
ଅଧରରୁ ଫୁଟେ ଆଂଧ୍ର ବାଣୀ ।

ମଦାଳସୀ ସୁଠାମ ସୁଂଦରୀ
ହେବ ପ୍ରାୟ ତେଇଶି ବରଷ,
ମନେ ଦେଲା ଅପୂର୍ବ ଚେତନା
ଚିତ୍ତ ହେଲା ସୌମ୍ୟ ଓ ହରଷ ।

ଅଧର୍‌ରେ ଇଂଗିତ ଦେଇଣ
ମରମର ସ୍ୱରେ ସୁଗୂଇଲା,
ହ୍ନିଏ ଦଖ ବୋଧହୁଏ ରଜା
କି ସୁଂଦର 'ଭଲ ବଜାଇଲା' ।

କି ସୁଂଦର ବଜାଇଲା କହ
ଅପରୂପ 'ଶଂକରାଭରଣ',
ସାର୍ଥ ହେଲ ଜୀବନ ଆମର
ସୁପବନ୍ଧ କଲା ଗୋ ଶ୍ରବଣ ।

## ଶଙ୍କରାଭରଣ ଚଳଚ୍ଚିତ୍ର ସଂଦର୍ଶନେ

ବିଷାଦ ସାଗରେ ମୁହିଁ ଯାଉଥିଲେ ଭାସି
ଉଦରରେ ଝରନାହିଁ ମୁଠେ ଭାତ
ଅବା ଟୋପାଏ ସଲିଳ
ମୁହିଁ ଉପବାସୀ ।

କେମନ ମୁଁ ଚଳାଇବି ଏଇ ସଂସାରରେ
ଦୁଇପୁଅ ଦୁଇଝିଅ ମୁହିଁ ପୁଣି ମୋର ପତ୍ନୀ
ଜଞ୍ଜାଳରେ ବୁଡ଼ି ରହି ପ୍ରାଣ ମୋର
ହୁଏ ଛଟପଟ
ଏହାଠାରୁ ବଳି ଅପମାନ ଆଉ ଅଛି କଣ ।

ରାଜବଂଶେ ଜନ୍ମ ମୋର ନୁହଇ ଧନାଢ଼୍ୟ;—
ବଡ଼ଝିଅ ଗଲାଣିତ ବାହା ହୋଇ
ଆପଣାର ପତି ପାଶେ

କଲାଣି ଗୃହ ସଂସାର
ବନ୍ଧୁଙ୍କର ଆଶୀଷରେ ଖେଳାଣି ସେ
ସାତ ଗୋଟି ସଂତାନର ମାଆଁ
ଆଉଅଛି ଜ୍ୟେଷ୍ଠ ଝିଅ ଲାସ୍ୟଶ୍ରୀ କୁମାରୀ
ତାର ନାଆଁ ।

ପାଶେ ନାହାଁ କିଛି ବା ସଂବଳ
ଏସନ ବେଳାରେ ଯିବା ଅବା କେଉଁଆଡ଼େ କହ
ବୃଥାରେ ଚେଷ୍ଟିତ କଂପା ଚଳଚିତ୍ର ସଂଦର୍ଶନେ
ଦେଉଛି ଦ୍ୱିତୀୟ ପୁଅ ମୋର ଶୁଭେନ୍ଦୁ କୁମାର
ବୃଥାରେ ଉଚ୍ଛନ୍ନ ।

ବହୁବାର କହୁ ଶୁଣିଅଛି ଏଥି ଶଂକରାଭରଣ;
ତମେତ ସଂଗୀତ ବିଦ୍ୱାନ
ଚିତ୍ର ବାରେ କର ସଂଦର୍ଶନ ।

ତୁଛ ସମ ମୋ ସାଥିରେ କଲା ସେ ବାଦନ
ସେ ମୋର କନିଷ୍ଠ ସଂତାନ ।

ଶୁଣିଅଛି ମୁହିଁ ବାହାରର ଏକଚିତ୍ର
ନାମ ତାର ଶଂକରାଭରଣ ।

ଚଉବନ ବରଷଟି ଖଲ୍ଲଣିତ ଶିକ୍ଷ
ଦେଖୁଅଛି ମୃତ୍ୟୁର ସ୍ୱପନ
ସାଧୁଅଛି ବୋଝେଇଲା ମୁଁ ଦେଖିଲାଣିତ
ଆଖେପାଖେ ଗୃଳଶୀ ବରଷ
ଅନାଦୃତ ଏ ସଂସାରେ; —
ତଥାପି ମୁଁ ତାର ଅନୁରୋଧ ଏଡ଼ି ପାରିଲି ତ ନାହିଁ
ଗଲୁ ଆମେ ପରିଶେଷେ ତୋକେ ତୋକେ
ଗୃହା ପିଇ,
ଶୁଭେନ୍ଦୁର ବଳାତ୍କାରେ ।

ସାଥେ ଥିଲ୍ଲ ମୋର ସ୍ତ୍ରୀ
ଲକ୍ଷ୍ମୀକାଂତ ଜାଣେ ମୋର ପରିସ୍ଥିତି
ଜନତାରେ ମୁହିଁ ସବହକ୍ଷ
ହାତେ ମୋର ନାହିଁ ପଇସାଟି
ଦେଲ ସେଇ ଜଣି ସିନେମା ଟିକସ
ଏହା ଏକ ସଙ୍ଗୀତ ମାଧୁର୍ଯ୍ୟ ଚଳଚ୍ଚିତ୍ର
ଆରଂଭିତ ଚଳଚ୍ଚିତ୍ର ରଜତ ପର୍ଦାରେ
ହେବ ଅବା ପାଂଚୋଟି ମିନଟ ।

---

## ଲୋଡ଼ାନାହିଁ ଆଉ ଶୋଣିତର ସ୍ୱାହା

ତମ କୋରାନରେ ଯୁଦ୍ଧ କାହାଣୀ ଛୁଟେ,
ଆମ ଗୀତା ସରେ  ସଂଗ୍ରାମ ଫୁଲ ଫୁଟେ ।

ଶୋଣିତର ସ୍ରୋତେ ଆତ୍ମା ହେ କରେ ସ୍ନାନ,
ଗୀତା ଅଧ୍ୟାୟ ରୁଧିର କରଇ ପାନ ।

ଖଡ୍‌ଗ ଝଲକେ ତୁମେ ତ ଧୁରନ୍ଧର,
ଧନୁଶର ଭରେ ଜୀବନ ଚଳେ ଆମର ।

ପ୍ରଭାତରେ ଆମ ଯୋଦ୍ଧା ଅସିକୁ ମାଜେ,
ସୂର୍ଯ୍ୟ ଉଦୟୁ ସମୟେ ଡ଼କ୍‌କା ବାଜେ ।

ରଥୀ ଓ ସାରଥୀ ପ୍ରସ୍ତୁତ ହୁସିଆର,
ସଂଗ୍ରାମ ଆସେ ସଂଗ୍ରାମ ବାରବାର ।

ଝୁମୁଣ୍ଡେଶ୍ୱର ଝୁହେଁ ତ ଯୁଦ୍ଧ ସଖା,
ଛ୍ୱଧଉତ ଅସି ଯତନେ ଢୋଇଛ ରଖା ।

ଶକ୍ତ ଶତ୍ରୁଙ୍କ ଶୋଣିତ କରିବ ପାନ,
ତମ ଆଲ୍ଲାତ କରଇ ଯୁଦ୍ଧ ଗାନ ।
ନଶୀଥ ପାଇଲେ ତମେ ଯିବ ଅଭିଯାନେ,
ପାର୍ଥ ଯିବେ ହେ ଶ୍ରୀ ନନ୍ଦୀଘୋଷ ଯାନେ ।

ସଂଗ୍ରାମ ପାଇଁ ତମେ ଶତ୍ରୁଙ୍କ ଅହରହ,
ଲଗେନା କାହାରେ ଯୁଦ୍ଧ ଦୁର୍ବସହ ।
ମହମଦ ଶତ୍ରୁଙ୍କ ଶୋଣିତ ପିଇବା ପାଇଁ,
କୁରୁକ୍ଷେତ୍ରରେ ଯୁଦ୍ଧ ଲଗଇ କାହିଁ ।
ପାଞ୍ଚାଳୀ ପିଏ ରୁଧିର ଗୃହରେ ଥାଇ,
ତୁମେ ଉଠ ପ୍ରାତେ ସଂଗ୍ରାମ ଗୀତ ଗାଇ ।

କୁର୍‌ବାନୀ କୁର୍‌ବାନୀ କୁର୍‌ବାନୀ,
ଆଲ୍ଲାରେ ପ୍ରିୟ ଅତି ଅତି କୁର୍‌ବାନୀ ।
ସମ୍‌କଳ୍ପ ସମ୍‌କଳ୍ପ ସମ୍‌କଳ୍ପ,
ଶୋଣିତ ପିଇବେ ହର୍ଷେ କଣ୍ଠଭରି ।

ତମେ ଗାଅ ସଖା ନମାଜ ସନ୍ଧ୍ୟା ପ୍ରାତେ,
ଭୂର୍‌ଭୁବସ୍ୱାହା ଆମେ ଗାଉ ଦିବାରାତ୍ରେ ।
ଚାଲ ଭାଇ ଯିବା ହାତେ ହାତ ଛନ୍ଦିଣ,
ଅନନ୍ତ ପଥେ ଅନନ୍ତ ବନ୍ଧଣ ।
ଶୋଣିତର ସ୍ୱାହା ଲୋଡ଼ାନାହିଁ ଆଜିକାରେ,
ଚାଲ ଯିବା ମିଶି ଅନନ୍ତ ଅଭିସାରେ ।

---

## ଓକୀଲଂକ ଉକ୍ତି

କହିବନ କାହାପାଇଁ ମିଥ୍ୟା ଏ ଜୀବନେ,
ଅପଳାପ ଜାଣେ ନାହିଁ, ଗ୍ଲାନି ଆସେ ମନେ ।

ଧନ ପାଇ ନାହିଁ ଆଶା ମନେ ତୁଚ୍ଛ ମୁଇଁ,
ଲୁହେଁ ନାହିଁ ମଣିଷର ଧନ ନେବ ଦୂଇଁ ।

ଓକଲତି କାମକରେ ନଷ୍ଟପ୍ରୁ ମୋ ପାଇଁ,
ତା ବୋଲି ମୁଁ ମିଛ କଥା କହିବ ବା କାଇଁ ।

ପକ୍ୱ ହୋଇଲାଣି କେଶ ଦଶେ ଝୋଠ ପରି,
ଚକ୍ଷୁରୁ ଜ୍ୟୋତି ଗଲାଣି କ୍ରମେ ଅଗ୍ରସର ।

ଦେଖିପାରେ ନାହିଁ ଆଉ ଆଇନ ପୁସ୍ତକ,
ଇଂଦ୍ରଜାଲ ପରି ଲାଗେ, ଘୂରଇ ମସ୍ତକ ।

ଲୁତା-ଜାଲ ଅବା ସେତୁ ଘଣ୍ଟିତ ଜଟିଳ,
ଚାଣକ୍ୟର ମତି ଠାରୁ ଜଟିଳ କୁଟିଳ ।

ସଂଧ୍ୟା ଆସେ ନଇଁ ମୋର ପରାଣ-ଗଗନେ,
ଡାକଅଛି ଯିବାପାଇଁ ଅଂତିମ-ଲଗନେ ।
ସତୁରୀ ବର୍ଷ ଉତ୍ତୀର୍ଣ୍ଣ ହେଲଣି ହେ ସଖା,
ମଥାପରେ ବୁଲେ ଆଜ ମରଣର ପଙ୍ଖା ।
ସ୍ନେହର ଦୁଲାଳୀ ମୋର ପ୍ରାଣ ଠାରୁ ବଳି,
କେବଳ ଗୋଟିଏ ବୋଲି କନ୍ୟା ଅଛି ବଳି ।
ତିନୋଟି ଝିଅ ମଧ୍ୟରୁ ଅଛି ଏକ ବୋଲି,
ଧର୍ମ ସମ ସତ୍ୟ କହେ ପ୍ରାଣ-ପୋଥି ଖୋଲି ।
ତା' ପାଇଁ ଜୀବନ-ନୌକା ଚଳାଇ ଏ ଭବେ,
ତେଣୁ ବିଷାଦ ଶାସ୍ତିକା ଆତ୍ମାରାମ ରବେ ।
ଯେବେ ମୁଁ ବୁଜିବି ଆଖି କେହି ତାର ସାହା !
ନଥିବେ ଜଗତେ କିଏ କହିବାକୁ ଆହା ।
ତାର ପାଇଁ ଲେଖା ପଡେ ଧନ ଦଉଲତ,
ତା'ବୋଲିବା ସଂଗିନିଙ୍କ ମହା-ସତ୍ୟ-ବ୍ରତ ।
ଅଜସ୍ର ଧନ ସଂପତ୍ତି ଦେବ ତମେ ସତ,
ମୃତ୍ୟୁ କାଳେ ମୋତେ ନିନ୍ଦା କରିବ ଜଗତ ।
ପଚିଶ ବର୍ଷ ଗଲଣି ଏ ଜୀବିକା କରି,
ଆଉ ଦୁଇ ବର୍ଷପରେ ଯିବି ଅପସରି ।
ଆସିବ କାଳ ଟେଙ୍ଗି ଲୁଚିବ ଏ ଦେହ-
ମାଟିରେ ମିଶିବ ତନୁ ତେଜି ଭବ-ସ୍ନେହ ।
କହିବ ନାହିଁ କଦାଚ ମିଥ୍ୟା-ଅପଳାପ,
ଆସିଅଛି ଏ ଧରାକୁ ଲଭି ସିନା ଶାପ ।
ଫେରସ୍ତ ନଅ ପଇକେ ଦେବା ଓ୍ୱାକାଲତ,
ନକଲ ଦିଅ ସେଥିରୁ ତମ ଦସ୍ତଖତ ।
ଗାଂଧାରୀର ଆଶୀର୍ବାଦ ଜାଣନ୍ତି ଆହା,
'ଧରମର ଜୟ ହେଉ' କହିଥିଲେ ଯାହା ।
ଅକ୍ଷର ଅକ୍ଷରେ ତାହା ଫଳିଲାକି ନାହିଁ,
ଯହିଁ ଧର୍ମ ତହିଁ ଜୟ ମାତ୍ର ଯିବ କାହିଁ ।

ପରପଂଚ ଧନଲୋଭ ଦେଖାଅନା ମୋତେ,
ଯାହା ମିଳେ ଦନକରେ ଜୀବନର ସ୍ରୋତେ ।
ଯଥେଷ୍ଟ ତା' ପରିଣତେ ଏଇ ବୟସରେ,
ଯେ ଯାହା ଦଅଇ ମୋତେ ନିଜ ହରଷରେ ।
ସଂକ୍ଷିପ୍ତ ସଂସାର ଯାଏ ଚଳି ସୁଚୁଖରେ,
ଗୃହିଣୀ ଓ ଏକଝିଅ ସ୍ପଂଦରେ ମଧୁରେ ।
'ସତ୍ୟ ମେବ ଜୟତେ' ଏ ମୃଗାଂଙ୍କର ବାଣୀ,
ଉଷାରେ ଶ୍ରବଣେ ଡାକେ ତାମ୍ରଚୂଡ଼ ଆଣି ।
ସତ୍ୟପଥେ ଅଗ୍ରସର, ସତ୍ୟ ଚିରପାଳେ,
ସତ୍ୟହିଁ ଜୀବଂତ ବଂଧୁ ! ଚିର କାଳେ କାଳେ ।
ପ୍ରଭାତରେ ଉଦେ ରବି ସତ୍ୟର ସାରଥି,
ବହଗ ବର୍ଗ ଗାଆନ୍ତି ହୃଦ ଚଳ ମଥି ।
ଧର୍ମପଥେ ନିତ୍ୟ ଧର ହୁଏ ଅଗ୍ରସର,
ଅହିଂସା ସିଂହ ଦୁଆରେ ଦୁଂଦୁଭି ମୁଖର ।
ସତ୍ୟପଥେ ଚାଲିଥିବ ଗାଇ ଜୟଗାନ,
ସତ୍ୟ ପଥେ ନିତ୍ୟ ମୋର ମହା ଅଭିଯାନ ।

---

## କେଉଁଠି ଅଛହେ

ଏଇ ବସୁଧାରେ ଜନ୍ମ ଦେଇଚ ଯାହା,
ଧନ୍ୟ ହେ ପ୍ରଭୁ ଧନ୍ୟ ହେ ଚଉବାହା !
କେହ୍ନୁହେ ଭବେ ଶତ୍ରୁ ହେ ମୋର ଜାଣ,
ସ୍ବଦେହ ହିଁ ଅରି,—ସଦା ଭାଂଗଇ ପ୍ରାଣ
ଡ଼ାକ ନଅ ଶେଷ ଥର ପାଇଁ;
କେଉଁଠି ଅଛହେ ଦେଖାତ ତମର ନାହିଁ ।

---

# ପୂର୍ବାର୍ଦ୍ଧ

ବିରହ-ଗରଳେ ଜର୍ଜର କେଉଁ ନାଗଗ୍ରାମଣି,
ଶେଫାଳୀ କୁସୁମ ବାସିତ ଗଂଧ ବହ ସରଣୀ ।
ଅନୁଗତ ଅଳି ମାଳାରେ ଚଉଦିଗ ଗୁଞ୍ଜଣି,
ରଚି ଉପବନ ବିହାର ପ୍ରାତଃ ସମୟୁ ମଣି ।

ମଧୁପ ମଧୁପ ଭୂପତି ମୌଳମଣି ସୁନ୍ଦର,
ଭୂପତି ମାଧବୀ ବଲ୍ଲଭ ସହଚର ସୋଦର ।
ଜୀତିଲ ଜାଣିଲ ପାତକୀ ଜନ ଅନୁସରଣେ,
ଚରିହର ଶୁଦ୍ଧି ଶୋଭୁଛୁ ପିନା କୃଷ୍ଣ ଚରଣେ ।

କରନ୍ତି ଆକ୍ଷେପ ଭ୍ରମରେ ଦେଖ ଦେଖ ଧୂସର,
ଯେତେ ପ୍ରଥିତ ପଥିକ କୁଳ ରମଣୀ ବର ।
ଗଦାଧର ପଦ ପଙ୍କଜେ ରଚି ଶିର ବସନ୍ତ,
ଅମୃତ ଭୋଜନେ କରତେ ଲଭୁ ଅତି ତୃପତ ।

ବିରହୀ ଜନଙ୍କ ତୋ ବନ୍ଧୁ ପରି ଇହ ଜଗତେ,
କମଳା କୁମର ସୁହୃଦ ଭୃଙ୍ଗ-ପରି ସଂଗତେ ।
କରିଣ ଅବ୍ୟକ୍ତ ମଧୁର କଳ ଗଂଭୀର ସ୍ୱନ,
ଅନାୟାସେ ହରି ନପାରୁ କହ କାହାର ମନ ?

ଅଶରଣ ଜନ ଶରଣ ପିତା ମହତ ଧାମ,
ଅଶରଣ ମୁହିଁ ଅଧୁନା, ଅଟୁ ତୁ ଅଭିରାମ ।
କ୍ଷୁଦ୍ରର ଶରଣ ରକ୍ଷଣେ ତତପର ଜଗତେ,
ମହାନର ପରି ମହତ ହେଉଥାନ୍ତି ନିରତେ ।

ତମଠାରେ ମୋର ପ୍ରାର୍ଥନା ଆହେ ମଧୁପୋତ୍ତମ,
ନୋହିବ ଅରଣ୍ୟ ରୋଦନ ପୂଜ୍ୟ ତବ ସଂଯମ ।
ଝିବୁକର ଛବି ଉଚ୍ଛ୍ୱାସେ ହୁଏ ମୁହିଁ ତନ୍ମୟ,
ସଂଦେଶ କହ ମୋ ବଂଧୁରେ ହୋଇ ମାନ ସଦୟ ।

ମୋର ଭାଷା ପରିମାଣି ହେ ମକରନ୍ଦାସ୍ୱାଦନ !,
ନୋହି ପଥଭ୍ରମ କରିବ ନିରୂପଣ ଅୟନ ।
ମୋ ପ୍ରାଣ ବାନ୍ଧବ ସୁନ୍ଦର-ମଧ୍ୟେ ଅତି ସୁନ୍ଦର,
ବନ୍ଧୁଜୀବ ବୀଥି ମଧ୍ୟରେ ଯିବ ଅତି ସତ୍ୱର ।

ବିଳମ୍ବ ବିହିଲେ ପ୍ରମାଦ-ହେବ ଅଂବୁଜ-କାୟେ !,
ବିଶ୍ୱଜନ ଚିତ୍ତହାରୀ ସେ ବାରବାମା ପରାଏ ।
ନିଜ ଅପରୂପ ମାଧୁରୀ ପରକାଶେ ଧୃଷଣା,
ବାସନା ପ୍ରସାରେ ତୁଷ୍ଟି ତମେ ଭୁବନ ଜଣା ।

ଗୋଲାପ ସୁନ୍ଦର ସରଣୀ ଅନୁସରିବ ତହୁଁ,
ଧରିତ୍ରୀ କୁସୁମ ବନ୍ଧୁଙ୍କ ଗଣ୍ଡ ରମ୍ୟତା ଯହୁଁ ।
ପରଶିବ ନାହିଁ କଦାପି ଅଙ୍ଗ ସଙ୍ଗମ ଲୋଭେ,
ଚିରଦିନ ଗତି ନିରୋଧ ହେବ ପକ୍ଷ ଅଭାବେ ।

ରୋମାଞ୍ଚ ଉଦ୍‌ଗତ ସ୍ଫୁଟନୁ ସତ୍ୟ ସେ ପୁଷ୍ପବନ୍ତ,
ଅନୁରାଗ ସର କାହିଁବା ତହିଁ ନୁହେ ସେ ସନ୍ତ ।
ପରଶେ ପୁଲକାପ୍ଲୁତର ପ୍ରାପ୍ତ ବିଦାରେ ଅଙ୍ଗ,
ଦୂରରୁ ଦର୍ଶକ ନୟନ ହରେ ଦର୍ଶାଇ ରଙ୍ଗ ।

ପ୍ରିୟତମ ସମ ମଧୁର କର୍ଣ୍ଣପୂର ଆଧାର,
କୁସୁମ କଳିକା ମଣ୍ଡିତ ଚାରୁ ମାଧବୀ ଧାର ।
ଦର୍ଶକ ମାନସ ନୟନ-ହର ସୁପରିମଳ,
ସଂସାର ପ୍ରସାର କୌତୁକବନ୍ତ ଅତି ବିମଳ ।

ବନ୍ଧୁଳ ଚଞ୍ଚଳ ଗାୟକ ଚଞ୍ଚରୀକ ମାଳିକା,
ତବ ଅଭିରୂପ ସୁଷମା ଧର ଅନୁସାରିକା ।
ତନ୍ମତ ମାଦୃଶ ଶରଣ ଶୀଘ୍ର କାର୍ଯ୍ୟ ତତ୍ପର,
ତା ଅନୁସରଣେ ନଥିବ ଇଚ୍ଛା ଲବ ତମର ।

ବିଶ୍ୱ ଗୁଣାଦର୍ଶ ମହିମା ଲକ୍ଷ୍ମୀ ପୂର୍ଣ୍ଣ ଶରୀର,
ଦେଖିଣ ଭ୍ରମରେ କଦାପି ହେବନାହିଁ ଅଧୀର ।
ସାଧୁଜନ ପାଶେ ଚାଞ୍ଚଲ୍ୟ ବିନା ପ୍ରମାଦ କର,
ବିଶ୍ୱେ କଏ ନର ଦେହରେ ତତ୍ତ୍ୱେ ନଧରେ ଡ଼ର !

ମଲ୍ଲୀମତଲ୍ଲିକା ବୀଥିରେ ରମ୍ୟତର କୋରକ,
ଅଳଙ୍କାର ଶିଖ ସମ୍ଭାର ଅଛି ମଂଦ୍ର ସ୍ଫୁରକ ।
ତବ ବଂଶଧର ତାପରେ ବସି ମଧୁର ତାନେ,
ଆଳାପୁ ଥିବେତ ହରଷେ ତୂର୍ଯ୍ୟ ଉଦାତ୍ତ ଗାନେ ।

ସତେ ପାଞ୍ଚଜନ୍ୟ ଶଙ୍ଖର ସୁମଧୁର ମାଧୁରୀ,
ସ୍ଫୁଟୁନଥିବତ ତହିଁରୁ ଶ୍ରୁତି ହର ଚାତୁରୀ ।
ମନ୍ଦାକିନୀ ଚାରୁ ପ୍ରବାହେ ନଳ କମଳବତ,
କୋରକ ମଣ୍ଡନ ମଧୁପ ଶୋଭୁଥିବ ନିୟତ ।

ପରିମଳବାହୀ ମରୁତ ବହି ତହିଁ ଭ୍ରମର,
ଘ୍ରାଣ ତରପଣେ ହୋଇବ କ୍ଷମନେ ଭୃଙ୍ଗବର ।
ମକରନ୍ଦାମୃତ ଭୋଜନ ହେବ ତୃପ୍ତି ଦାୟିକ,
ଅଙ୍କିତ ହୋଇବ ଅତିଥି ତୁମ୍ଭ ପରି ପଥିକ ।

ପୃଷ୍ଟି ଆଲିଙ୍ଗନେ ପରଶି ବସନ୍ତ କୁସୁମ ରାଶି,
ହରିବ ଶରମ କ୍ଷଣେକ ଆହେ କୋମଳ ଋଷି ।
ଭ୍ରମର ବିରହେ ତା' ମନ ହେଉ ଅତି ବ୍ୟଥିତ,
ସଂଭାବନା ଶିଖା ପ୍ରଦାନେ ସନ୍ତୋଷିବ ତା ଚିତ୍ତ ।

ପ୍ରଧାନ ଉକ୍ତି ଭୂଷଣେ ଭୂଷିତ ଜନତାର,
ତୋଷବର୍ଦ୍ଧିବନା ପ୍ରଭୁଙ୍କ ନିନ୍ଦ୍ୟ ନୁହେ ସଂସାର ।
କର୍ଣ୍ଣିକାର ସାଥି ସରଣୀ, ତହୁଁ ଚଳିବ ଯେବେ,
ସୁମନ ସଭାର ସଂସାରେ ସମ୍ଭୃତ ସେ ଭବେ ।

ସୌମନସ୍ୟ ସିନା ଜଗତେ ମନୋହରଣ ପ୍ରୀତି,
ଅପାର ପାଣ୍ଡିତ୍ୟେ ମଣ୍ଡିତ ଏ କର୍ଣ୍ଣିକାର ସାଥି ।
ସଦ୍‌ଗୁଣ ସଂପଦ ଆକର ଅଟେ ଉତ୍ତମ ଜଗତେ,
ଭ୍ରମରେ ଅତିଥି ଦେଖି ସେ ହେବେ ହର୍ଷ ମରତେ ।

ଅରପିବେ ଦିବ୍ୟ ଆସନ ସ୍ୱର୍ଣ୍ଣବରଣ ଫୁଲ,
ମଧୁପର୍କ ଦେଇ ଷାଟେଷ୍ଟି ନେବେ ଆପଣାଭୁଲ ।
ଆନନ୍ଦିବ ତହିଁ ଦ୍ୱିକ୍ଷଣ ହୋଇ ମୋଦ ଗଂଭୀର,
ମିତ୍ର ସେନେହ ଯା ନକରେ କାହିଁ କେହ୍ୱ ବଧୀର ।

ବିଶଦ ସୁବାସ ପରଣ ଦିବ୍ୟ ହରିଚନ୍ଦନ,
ଦେଇ ହଯତନେ ପୂଜିବେ କର ସୁଖ ଲମ୍ବନ ।
ଇତିତର ନୋହି ମଧୁପ, ପୂଜା ଦେଖ ଉକ୍ଷଣ,
ଚଳିବ ନକରି ବିଳମ୍ବ ଧରି ଉତ୍ତରାପୂଣ ।

ନହେବ ଭାସ୍କର ପରସ୍ୱେ ଅନ୍ତଶାସ୍ୱ ସ୍ଥାପିତ,
ଦେଖାଇବ ନାହିଁ ଖରତା ଯଥା ଖଳଙ୍କ ଚିତ୍ତ ।
ସୌମନସ୍ୟ ଶିଶ୍ର ସୁଷମା ମଣ୍ଡି ତୁଟର ପୂତ,
ହୋଇଣ ଚଳିବ ଝଟଣ୍ଡ ଆହେ ମଧୁପ ଦୂତ ।

ଶରଣ ସୋଦର ବିଜୟ-ଧ୍ୱଜା ଉଚ୍ଚେ ତୋଳନ,
ରଣେ କେ ହୁଅଇ ଅଭୟ-ଦାନେ କୁଣ୍ଠିତ ମନ ।
ଶରଣାଗତର ପାଳକ ଭବେ ନନ୍ଦ ନନ୍ଦନ,
ସେଇ ବର୍ଣ୍ଣ ବନ୍ଧୁ ହୋଇଛୁ ବିଶ୍ୱେ ନିତ୍ୟ ପୂଜନ ।

ପୃଷ୍ଠପାକ ଶୁଦ୍ଧ କାଞ୍ଚନ କମନୀୟ ଚଂପକ,
ରାଜ ବିରାଜଇ ତାପରେ ଯହିଁ ସ୍ତବ୍ଧ ଦର୍ଶକ ।
ଆକର ଆପଣା ସୌରଭ ଶିଶ୍ରଷ ଗଂଧଭାରେ,
ପଥିକ ଦର୍ଶନ ନକର ଅନ୍ତ ଅବହେଳାରେ ।

ପାନ୍ଥ ଭ୍ରମ ତହିଁ ସୁଜନ କାମ ପାବକ ଚୂଳ,
ପ୍ରଜ୍ୱଳିତ ହୁଏ ପ୍ରଚଣ୍ଡ ଦେଖା ନଥିଲ କୂଳ ।
ଅଳିଭର୍ତ୍ସାଂଜନ ଗନ୍ଧିତ ତହିଁ ନାହିଁ କିଞ୍ଚିତ,
ନିର୍ଧୂମାଗ୍ନି ଜ୍ୱାଳା ଜଳାଇ ଦେବ ପଥିକ ଚିତ୍ତ ।

ନହେବ ତାହାର ସୌରଭ-ସଂପଦରେ ବିଲବ୍ଧ,
ଜୀବନ ହାରକ ଜୀବନ ନେବ ହୁଅ ବିଶ୍ରବ୍ଧ ।
କାଂଚନ ଶୋଭନଶଙ୍କରୀ ଅପସରନିକର,
ରୂପାନ୍ତର ଧରି ଏଠାରେ ବିରାଜନ୍ତୁ ଭ୍ରମର ।

ମଇନ୍ଦ ହୁଅଇ ବିଅର୍ଥ ଅଳି ନିଭୂଂକେ ଅଳ୍ପେ,
ଲେଖାର ସଂପଦ ପରସ୍ୱେ ଶାପୁଁ ତାତ କଳପେ ।
ପରିମଳେ ବଳେ ଆକୃଷ୍ଟ କ୍ଷୁବ୍ଧ ଇନ୍ଦୀନ୍ଦୀ ରାଜି,
ନିରାଶେ ଗମନ୍ତୁ ଅଭୋଜ୍ୟ ତ୍ୟାଜ୍ୟ ବୋଲିଣ ଭାଜି ।

ଯେଗୁଣ ନୁହଇ ପୂଜନ-ସ୍ଥାନ ଏହୁ ଜଗତେ,
ଅରଣ୍ୟ କୁସୁମ ବୋଲନ୍ତି ତାକୁ ସାଧୁଏ ସତେ ।
କି କରିବ ଗୁଣୀ ଚମ୍ପକ ପ୍ରକାଶିତ କରମ,
ଦେଖି ସୁମରଇ ନିରତେ ନିଜ କୃତ ଧରମ ।

ମୋ ଘ୍ରାଣ ବାଂଧବ ବଦାମ ଗଂଧ ନାଗକେଶର,
ଯାଥି ତଥି ପରେ ଗଜଳ ମଧୁକାହ୍ନବର ।
ସତେକି କାମର ସେ ଶାଣ ବାଣ ତୀକ୍ଷ୍ଣ କାରଣ,
ପଥିକ ଚେତନ ହରାରେ, ଯାର ନାହିଁ ରକ୍ଷଣ ।

ଉଗ୍ରତମ ପରିମଳରେ ଆକର୍ଷେ ପଥିକ,
ପାଶେ ଗଲେ ଶୋକେ ବିଳପେ ଯଥା ହଦଗ୍ଧ ପିକ ।
ମଧୁକର ! ମଧୁକରଙ୍କୁ ମଧୁ ଦଳ ହରାରେ,
ମଧୁର କୁସୁମେ ସେମଧୁ ମାସ ଶିଶୁ ହସ୍ତାରେ ।

ବଧୂଜନ କର୍ଣ୍ଣ ପାଟରେ ଶିରୀ ହନ୍ତୁଡେ ମୋଦେ,
ସୀଧୁ ଗନ୍ଧ ଧରି ସନ୍ତୋଷେ କାମିଜନ ବିନୋଦେ ।
ଅଦ୍ଭୁତ ଗୁଣରେ ମଣ୍ଡିତ ବକୁଳର ମହିମ,
ଶୁକ ଶକୁନଙ୍କ ମଧୁର କଳରବେ ଗାରିମ ।

ତରାଗରେଜରେ ହସ୍ତାରେ ଅଙ୍କ ଭାବ ନିରତ,
ଚଞ୍ଚରୀକ କଦମ୍ବକର ମୋହ ତେଉ ସତତ ।
ଯା' ପରିମଳରେ ସନ୍ତୁଷ୍ଟ ଶ୍ରୀ ମାଧବ ବଲ୍ଲଭ,
ଗନ୍ଧେରୀ ବାଗ୍‌ଦେବୀ ଯାଗନ୍ଧେ ସ୍ନେହେ ମଂଡ୍ରନ୍ତି ଗଭା ।

ଯା' ଗନ୍ଧ ଆଘ୍ରାଣି ହରିଣକୁଳ ମୁଗ୍ଧ ଚେତନ,
ବସନ୍ତ ରଜାର ଯେ ସଦା ବେହରଣ ଭବନ ।
ରାଗ ରାଗିଣୀଏ ଯାମ୍ଭଳେ ଥାନ୍ତି ଗନ୍ଧ ଆଶାରେ,
ଆଗତ କାମିନୀ ଗଳାରୁ ଅଯତନେ ବାହାରେ ।

ତା'ଗୁଣ ସଂପଦ ଗଣନା କରିପାରିବ କେହ୍ନି,
ଜାଣିବ ସେସିନା ଯେହେବ ଗୁଣ ଦର୍ଶନେ ସ୍ନେହୀ ।
ବକୁଳର ବୀଥି ତାପରେ ଶୋଭେ ବହୁ ସୁନ୍ଦର,
ସ୍ତୁକୁଳ ସୁକୁଳ ପ୍ରକାରେ ଛନ୍ତି ସ୍ତନ ମଂଦର ।

ସୁମନସ-ଅଳଂକାରେ ସେ ମଂଡ଼ି ଅନବରତ,
ସୁମନସ ଜନ ତୋଷନ୍ତି ହୋଇ ସୁମନବ୍ରତ ।
ମଧୁପାଳ ଦ୍ୱିଜେ ରଚନ୍ତି ସଦାମୃତ ଭୋଜନ,
ମଧୁପାଳ ସହଚରଙ୍କୁ ବର୍ଜନ୍ତି ବନ୍ଧନ ।

ଆତପ ବାରନ୍ତି ସେ ଛାୟା ଦାନେ ତାପସଙ୍କର,
ଆତପ ବଢ଼ାନ୍ତି ନରତେ ସଦା ତାପ ଶଙ୍କର ।
ମନ୍ୱିତ ଚରଣ ଅନ୍ତରେ କରୁଛନ୍ତି ମୋନ୍ୱିତ,
ମହୀ ତ ପରାଗ ଅନ୍ତରେ ହୋଇଛନ୍ତି ସେନ୍ୱିତ ।

ଚନ୍ଦ୍ରକର ନଶି ସଂପର୍କ ନତେଜନ୍ତି ନରତେ,
ଚନ୍ଦ୍ରକର ସଦା ସଂପର୍କ ତେଜି ଅଛନ୍ତି ବ୍ରତେ ।
କୌସୁମ ସଂପଦ ଧରଣ ବିତରନ୍ତି ସୁଗନ୍ଧ,
କୃତକର୍ମା ଦ୍ୱିଜ ସଂଘଟ୍ଟ ଯାନ୍ତେ ହୁଅନ୍ତି ଅନ୍ଧ ।

କୃତକରମା ଦ୍ୱିଜ ସଂଘ ପାନ୍ତି ସଂଚତେ ସୁଖ,
କୃତକରମାସୁମଣ୍ଡିତ ନଜାଣନ୍ତି ସେ ଦୁଃଖ ।
ବସନ୍ତ ଶକୁନ୍ତ ସନ୍ତତ ପରିଶୋଭିତ ଶିଖ,
ବସନ୍ତ ସମ୍ପଦ ସଂହତ ଠିକ କାମ ବିଶିଖ ।

ଛାୟାମୂଳ ବେଦୀ ଉପରେ ବିରାଜନ୍ତି ତାପସ,
ମାୟାମୟ ଭବ ବନ୍ଧନ ନଥାଏ ତ ରାଜସ ।
ବିଳସିତ ରମ୍ୟ ହର୍ମ୍ୟରେ ନାହିଁ ସେସୁଖ ଲେଶ,
ମୂଳ ଛାୟାଶ୍ରିତ ଯେସୁଖେ ନାହିଁ ଲବେ ତ କ୍ଲେଶ ।

ତା' ଦକ୍ଷିଣେ ସ୍ତବକେ କିଂଶୁକ କଂଟୁକରେ ମଣ୍ଡିତ,
କୁସୁମା କୁସୁମେ ଶୋଭିତ କରେ ପାଂଥ ମୋହିତ ।
ଅନଂଗ ଅନଂଗ ସାୟକ ବୋଲି ସେ ପରିଚିତ,
ବିରହେ ବିରହଜାତ ଥାଇ ଦିଶେ ମାତ୍ର କଂଟିତ ।

ନନ୍ଦନେକ ହରିଚନ୍ଦନ ଶୋଭେ ଦିଶେ ସୁନ୍ଦର,
ଇନ୍ଧନ ବଦନ ହେନନ୍ତି ବହ୍ନି ଦ୍ୱିଜ ନିକର ।
ବୃନ୍ଦାରକ ବୃନ୍ଦ ବନ୍ଦିତ ତାହା ମୂଳ ଧରଣୀ,
ଗନ୍ଧବନ୍ତ ସୁବାସିତରେ ବନ୍ଦ୍ୟ ସେହି ସରଣୀ ।

ଜମ୍ବୁନନ୍ଦା ତୀରଚଂଚୂରେ କଯେ ଶୋଭା ଅପୂର୍ବ,
କୁମୁଜ ତାପଶତ୍ରୁଜନ୍ୟ ମୂଳେ ଶୋଭେ ଅପୂର୍ବ ।
କୃଷ୍ଣବୃନ୍ତ ଲେଦନକରେ କିବା କାମ ସାୟକ,
ଅପୂର୍ବ ସୁଷମା ବିସ୍ତାରେ ଦେଖେ ପାଂଥ ଗାୟକ ।

ପୂର୍ବ ପଟେ ତାର ବିରାଜେ କ୍ଷୁଦ୍ରଅନା ସୁନ୍ଦରୀ,
ରଜଦୋଷେ ରଜୋବନ୍ତି ସେ ମରନ୍ଦବାରି ଧରି ।
ଅସ୍ପରଶ ଦୋଷେ ଦୂଷିତା ନଛୁଇଁବ ତୋହରେ,
ମଧୁପାନ ହେଲେ ଛୁଇଁଲେ ଭଜମ୍ବିବ ଆଢ୍ୟରେ ।

ସଉରଭ ତାର ଉତ୍କୃଷ୍ଟ ଉଗ୍ରଗନ୍ଧା ସେ ଯେଣୁ,
ଉଗ୍ରଶିର ବିନା ଅନ୍ୟତ୍ର ନ ବିରାଜଇ ତେଣୁ ।
ସେ ରଜା ଧରଣ କପର୍ଦ୍ଦୀ ହେବେ ଦୋଷରୁ ପାର,
ସେ ରଜ ଧରଣ କପର୍ଦ୍ଦୀ ନହେବ କି ଅସାର ?

ବିଶ୍ୱରୂପଧାରୀ ସେ ରଜ ଦେହେ ହୋଇଣ ବୋଲି,
ବିସ୍ତାରନ୍ତି ନିଜ ଲିଙ୍ଗକୁ ଉପବେଶିଣ ଦୋଳି ।
ତା' ଆଗ୍ନେୟ କୋଣ ବିଳସେ ସହକାର ପାଦପ,
ରତନବେଦିକା ମଣ୍ଡିତ ତାହା ମୂଳ କଳପ ।

ଘେନ ଅଜାତଶ ସୁଷମା କେ ପାରିବ ତା' ଦେନି,
ଘନାଘନ ଆସି ଟେକଇ ତାହା ପାରୁଣ ବେଳ ।
ବହ୍ନତର ପୁଣ୍ୟ ଆଶ୍ରମ ଶାଖୀ ଶାଖୀ ଶୋଭଇ,
ସାମଗାନ ପୁଣ୍ୟ ଗୀତିକା-ଶ୍ରୋତା ମନ ହରଇ ।

ହର୍ଯ୍ମ ଅଧର ପାବକ ଶିଖା ସୁଖେ ଜ୍ୱଳଇ,
ଦର୍ଶକ ମାନସ ପ୍ରଚ୍ଛଦେ ଶାନ୍ତ ସୁଧା ଅଙ୍କଇ ।
ପୁଂସ୍କୋକିଳ କୁଳ ପ୍ରମୋଦେ କଳନାଦ-ମୋହନ-,
ମନ୍ତ୍ରପାଠେ ବଶୀକରଣ କରେ ଜନଙ୍କ ମନ

ସ୍ନେହ-ପ୍ରୀତି ସମାସ୍ୱାଦନେ କଣ୍ଠାପ୍ଲୁତ କୋମଳ,
ମଧୁର ମୁଞ୍ଚିତ ପଞ୍ଚମ କଳତାନେ ତରଳ !
ପଥିକ ନିକର ନିରତେ କେତେ ପାଞ୍ଚଇ ମନେ,
କେ କହି ପାରିବ ସ୍ୱମୁଖେ ଅନ୍ତରପୁ ଯତନେ ।

ଭୃଙ୍ଗ କାନ୍ତପୁଙ୍କ ମାଳାରେ ମୁଖରିତ ନିରତ,
ମହାଜନ ପଥ ତହିଁରେ ହେଉଥାଏ ଭୂଷିତ ।
କୁସୁମ ଅଙ୍କୁରୁ ସଲିଳ ଧାର ସଦା ବରଷି
ହରଷାଉଥାଏ ବୈକୁଣ୍ଠ ବ୍ରଜେ ରାଜନ୍ୟ ବଂଶୀ ।

ବସନ୍ତ ପ୍ରଭାତ ପ୍ରସୂନେ ବସେ ସହସ୍ର ଶତେ,
ମଗଳ ମଣ୍ଡିତ ଶାଖାରେ ମହୀ ଚୁମ୍ବନ୍ତ ସତେ ।
ଅକାଞ୍ଚନ ଅକଞ୍ଚନର ଦର୍ଶ ସ୍ୱରଗ ରୀତି,
ତାତନେ ବହିଲେ ମାନସେ ସଦା ଜାଗଇ ପ୍ରୀତି ।

ତହିଁଛନ୍ତି ମୋର କାମୁକ ରତି ସ୍ନେହାତିସାର,
କୌମୁଦୀ କଥା ଏ ନନ୍ଦିତ ଦେବ ମଦନ ସ୍ମର ।
ମୋ ବରଦେ ସଦା ଶଙ୍କିତ ତପୀ ବିଚ ଆସନ,
ଅଧୋମୁଖେ ମ୍ଳାନ ବଦନେ ପଦେ ରଖି ନୟନ ।

କାମର ବିବିଧ ଆୟୁଧ ଜର୍ଜରିତ ଦେହର,
ଅଧୁନା ନାଞ୍ଛିତ ବିକ୍ରମ ଲଭେ ମାତ୍ର ତାଂକର ।
ସଂମୁଖୀନ ତାର ଯୂଥିକା ପରେ ରହିବୁ ଯାଇ,
କଳସ୍ୱରେ ତାଙ୍କୁ କହିବୁ ମୋର ବାର୍ତ୍ତା ଯେନାଇ ॥

ଅନାଦର କଥା ତେଜିବ ଚିତ୍ତ ସଦନୁ କ୍ଷଣେ,
ସମ୍ବୋଧିବ ମଧୁଳହରେ ଦୈନ୍ୟେ ଭଣି ଆପଣେ ॥

---

## ଉତ୍ତରାର୍ଦ୍ଧ

କର୍ଣ୍ଣ ଅବତଂସ କୁସୁମେ ପ୍ରାଣ ବାନ୍ଧବଂକର,
ବସିବୁ ତୁ ଯାଇ ଭ୍ରମର ଭ୍ରମେ ଭ୍ରମରବର ।
କିଶଳୟ କମନୀୟତା ନଖଣ୍ଡିବ ତାହାର,
ଖଣ୍ଡିଲେ ଖସିବ ଶ୍ରବଣୁ ଆହେ ମଧୁପ ସାର ।

ବସନ୍ତ ସାଙ୍ଗିଲେ ନିଜର ନହେ ବିଷାଦ ମନେ,
ଇନ୍ଧନ ସରିଲେ ରହିକି ପାରେ ପାବକ କ୍ଷଣେ ?
ବୃନ୍ତପଞ୍ଜରେ ଯାଇ ବସନା ଭ୍ରମେ ହେ ମଧୁକର,
ବିଗଳିତ ପୁଷ୍ପେ ପକ୍ଷିବୁ ଶୋଷ ହେବ ଅଂତର ।

କିଶଳୟ ପ୍ରାଂତେ ନବସି ବସିବନ୍ତି ପ୍ରସୂନେ,
ମକରନ୍ଦ ପାନେ ବିଶ୍ରାମ କର ଅଳି ବିଧୂନେ ।
ସୃଷ୍ଟିର ମାନବେ ସହଜ ମୋର ବେଦନା ଜାଣ,
ଚପଳତା ତେଜ ଯିବ ହେ, କା କରିବ କଲ୍ୟାଣ ?

ଶୋଭନ ଚେତନ ପରଶ ବଂଧୁ ଯେଉଁ ସମୟେ,
ସନ୍ଦେଶ କହିବେ ସଧୀରେ ପ୍ରଶାନ୍ତେ ବହି ଅଭୟେ ।
ସରସ ଶ୍ରୁତିରେ ସୁରସ-ସଉରଭ-ସଂପଦ,
ଲବ ମାତ୍ର କାହୁଁ ରହିବ, ନାଁମ ସେତ ବିପଦ ।

ଅଉଷଧାଧିପ ଅଖଣ୍ଡ ମଣ୍ଡଳରେ କଳଂକ,
ଉଦୟେ ସମୟେ ରହଇ ବହ୍ନି-କର ଆଶଂକ ।
ଚରଣ ବଂଧୁଙ୍କ ସମୟେ ବର୍ଣ୍ଣ କରଣ ତ୍ୟାଗ,
ସୁସମୟେ ବ୍ୟକ୍ତ କରିବ ମମ ସନ୍ଦେଶ ଆଗ ।

ଚିହ୍ନିବ ମୋପ୍ରାଣ ବାନ୍ଧବ ଏହି ଲକ୍ଷଣ ଦେଖି,
ଚଞ୍ଚରୀକ ଶୁଣ ଶୁଣହେ ଆହେ ସାଧୁବିବେକୀ ।
ଶମା ଚନ୍ଦ୍ରା ବିଷାଦେ ତାଙ୍କର ଗଣ୍ଡ ଦର୍ପଣ ଖଣ୍ଡ,
ପରିପାଣ୍ଡୁରିତ ଭାବକୁ ଭଜିଥିବ ଅଖଣ୍ଡ ।

ଘୁମିତ ଲଳିତ ନୟନ ପଦ୍ମ ଦଳ ସୁନ୍ଦର,
ନାସା ଯେତେ ତିଳ କୁସୁମ ଗର୍ବ ସୁନାସୂତର ।
ଅଧର ବିମ୍ବୋଷ୍ଠ ରୁଚିର ଦରହାସ ଅଙ୍କିତ,
ଦରପଣଶୀଳ ଆନନେ, ଶତଚନ୍ଦ୍ରେ କଞ୍ଚିତ ।

ଚଳ ଶୋଭା କାନ୍ତି ନୁହଇ ଆହେ ଜ୍ଞାନ-ପାଠକ,
ଉରସ୍ଥଳ ଅତି ବିଶାଳ ଯଥା ହେମ ଫଳକ ।
ଆଜାନୁ ଲମ୍ବିତ ଦୋର୍ଦ୍ଦଣ୍ଡ ସଙ୍ଗେ ଉପଳସ୍ତଂଭ,
ସ୍ୱର୍ଣ୍ଣ ନାଳ ବାହୁ-ଦ୍ୱୟରେ କରେ ଯେ ପରିରଂଭ ।

ମୃଗରାଜ କଟି ସରଳ ଜଙ୍ଘା ପ୍ରାପ୍ତ ଉନ୍ନତ,
ସୁନ୍ଦର ଗୁରୁଗୁଣାବଳୀରେ ନିରନ୍ତର ଆନତ ।
ଲକ୍ଷ୍ମୀ ସର୍ବସ୍ୱ ଆଧାର ଅଟି ନବ ଯୁବକ,
କନକ କମଳ ମଞ୍ଜୁଳ ତାଙ୍କ ପ୍ରତି ତୃଣକ ।

ଚିହ୍ନିଏ ଲକ୍ଷାଂଶ ଲକ୍ଷିତ ସମ ଚରଣ ସିଂଧୁ,
ଶ୍ରୁତିରେ ଢାଳିବ ଅମୃତ ତୁମେ ଦୟାର ଇଂଦୁ ।
ବିସ୍ମର କରନା ମଧୁପ ! କୁଳଟାଙ୍କ ଏରୀତି,
ପ୍ରେମର ଚରମ କାଷ୍ଠାରେ ରହିଅଛି ମୋ ପ୍ରୀତି ।

ନ ଦେଖି ତୁମରେ ଆତୁର ହୁଏ ଯେସନେ ଭ୍ରମର,
ହୁଅଇ ମୋମନ ତେସନ ମକରନ୍ଦଅଧର ।
କହିବ ଚରଣ ବାନ୍ଧବୀ ଏବେ ରହିଛି ଦୂରେ,
କେତେ ଦୁଃଖ ବ୍ୟଥା ବେଣୁରେ ବାଇ ବିଷାଦସ୍ୱରେ

ବାସର ରଜନୀ ଗଣଇ କୁଡ୍ୟ ପକାଇ ଗାର,
ମରଣ ରହିଛି ଯଦିଚ ଜୀବନ ମମ ସ୍ଥିର ।
ମୋମନ ଚରଣ ଚରଣ-ବନ୍ଧୁ ଠାରେ ସଂସ୍ଥିତ,
ଦୁଃଖମୟ ଭବେ ଜୀବିତ ହୋଇ ଅନାଧାରିତ ।

ନିର୍ଜୀବ ପୁଣି ବିହୀନ ସାହାହୀନ ମାନବ,
ଅବସ୍ଥାନେ ଭବ କାର୍ଯ୍ୟକ ଅବା ହେବ ସମ୍ଭବ ?
ଶରୀରବିହୀନ ଚରଣ ମନ ଅକାର୍ଯ୍ୟକାରୀ,
ବଂଧୁ ସ୍ୱଜନଙ୍କ ସମୀପେ କରେ ସିନା ଗୁହାରି ।

କେଅଛି ଅଙ୍ଗନା ଏ ଭବେ ହୃଦେ ବେଦନା ଘେନି,
ଲୋତକରେ ସିକ୍ତ ନୟନ, ଝରେ ଗଣ୍ଡରେ ବେନି ।
ଚିନ୍ତା କାଳାନଳେ ମାନସ ଜଳୁଥିବ ନିରତେ,
ଜ୍ଞାନେନ୍ଦ୍ରିୟ କରୁନଥିବ କାର୍ଯ୍ୟ ଇହ ଜଗତେ ।

କର ଚରଣାବ୍ଜ ନଚଳେ ଗୃହ କୃତ୍ୟ ବଂଚିତ,
ବାରଣ କରଇ ନିରତେ ଚିନ୍ତା ବିକଳ ଚିତ୍ତ ।
ଶରଣ କେ ନାହିଁ ସଂସାରେ ଅରପିବ ଅଭୟ,
ଭୟହାରୀ ଜୀବବାନ୍ଧବ ଦୂରେ ଏବେ ଅଥୟ ।

ନିରଳସ ଚିତ୍ତ ମାନସେ କାର୍ଯ୍ୟ ନୁହଇ କଷ୍ଟ,
ଚିନ୍ତା ଜ୍ୱରିତର ଚେତନ ପ୍ରତିବନ୍ଧ କରିଛି ।
କାମ୍ୟକର୍ମ କଳା କୁଶଳୀ ଋଦ୍ଧେ ଶାଂତେ ନିରତେ,
ଚିନ୍ତିତର ସର୍ବ କୌଶଳ ଲୁପ୍ତ ହୁଏ ଜଗତେ ।

ପ୍ରେମିକ ସଂସାରେ ସର୍ବସ୍ୱ ସେ ତ ପରମ ଦେବ,
ଏକାନ୍ତ ଚେତନା ପ୍ରେମିକା ପ୍ରାଣେ ଅଭସ୍ଥ ଦେବ ।
ପିତା ମାତା ଭାଇ ଭଉଣୀ ସର୍ବେ ପ୍ରେମିକ ସୂତ୍ର,
ଶତାଂଶ ପ୍ରଦାନେ ଅକ୍ଷମ ସେତ ପରମ ଦୁଖ ।

ଶିବଶକ୍ତି ଅଂଶେ ଜଗତେ ନାରୀ ପୁରୁଷ ଜାତ,
ଶିବ ବିନା ଶକ୍ତି କାହିଁ ବା ସଂସାରେ ଅଭିଜାତ ।
ପ୍ରଭାତେ କୋକିଳ କୂଜନ ଅସହ୍ୟ ହୁଏ ମୋର,
ଅଶରଣ ଦେଖି ଉହୁଇ ଛିନ୍ନ କରିଣ ଡୋର ।

ଶୀତଳ ସୁରେଭ୍ର ମରୁତ ମମ ଗାତ୍ର ଦହନ,
କରୁଛି ପ୍ରେମିକ ବିହୁନେ ଦେଇ ଦୁଃଖ ଯାତନ ।
ବସନ୍ତ ଶକୁନ୍ତ ବାସନ୍ତୀ ବଲ୍ଲୀ ଉପରେ ବସି,
ମୋର ଉପହାସେ ନିରତ ରବକେତବେ ହସି ।

ବଣୀ କୁଣ୍ଡୁ କୁଣ୍ଡୁ ନିସ୍ୱନେ ବାଣୀ ଭଣଇ ମନ୍ଦ,
ଡାହୁକ କୂଜଇ ଛଳରେ ମୋର ଭାଗ୍ୟକୁ ମନ୍ଦ ।
କେନାଠ ନାଠରେ ସତତ ଦେଖି ମୋର ଅବସ୍ଥା,
ଗୋବର୍ଦ୍ଧ ବାହକ କହଇ କୁଠେ କପଟ କଥା ।

ପିକଡାକ ମୋତେ କରଏ ସଦା ବଧିର ମୂକ,
ଶାରୀ କାଢ଼ି ବାନ୍ଧୁ ବୁହାଏ ନେଇଁ ପୁଣିହେ ଶୁକ ।
ଚଠ ଚଠ କରି କହଇ ଘୁର ଚଠକ ପକ୍ଷୀ,
ଟିଁଢ଼ିଭର ରବ ଶୁଣିଲେ ବୁଜିହୁଏ ମୋ ଅକ୍ଷି ।

ଅଳସେ ଦ୍ୱିରଦ ପରାଏ ମୋତେ ଦେଖି ଗର୍ଜଇ,
କଶଳସ୍ଥ ବଲ୍ଲୀ ମୋହରେ ଦେଖି କବା ହସଇ ।
ଉଦ୍ୟାନ ପାଦପେ ମୋହର ପାଦ କଣ୍ଟକ ପରି,
ଋତୁ କୁସୁମିତ ମହୀଜେ ମୋରେ ବିଷ ଆଚରି ।

ସୁମନସ ଲକ୍ଷ୍ମୀ ମୋ ପ୍ରତି ଅଲକ୍ଷ୍ମୀର ପରାୟେ,
ଆଚରଇ ତବ ବିହୁନେ ଥୟେ ରତ୍ନବ ଆହେ ।
ସରସୀ ବରଷି ଦେଉଛି ଦୁଃଖାନଳ କଣିକା,
ସାଗର ଗର୍ଜନ ତାଠାରୁ ବଳିପଡ଼େ ଅଧିକା ।

ପଙ୍କଜ ଦେଖିଲେ ରଙ୍କ ମୁଁ ହୁଏ ପ୍ରେମିକ ପାଇଁ,
କୁମୁଦ ମୋମୁଦ ନାଶଇ ଦେଲେ ଥରେ ଅନାଇ ।
କହ୍ଲାର ଦର୍ଶନେ ମଲ୍ଲାର ପରି ଲାଗେ ପରତେ,
ଇନ୍ଦୀବର ବନ୍ଦୀ କରଇ ନେତ୍ର ଯୁଗଳ ସତେ ।

ରକ୍ତୋତ୍ପଳ ରକ୍ତନୟନେ ଚାହେଁ ମୋତେ ସଦୟେ;
ଶୈବାଳ ବନେ ମୋ କେଶ ଗ୍ରନ୍ଥି କବା ଉଦୟେ ।
ଚନ୍ଦନ ଲାଗଇ ଜଳନ୍ତା ଇନ୍ଧନର ପରାୟେ,
ରଜନୀ ନାୟିକା ସାୟକ ପରାଭୟର ନ୍ୟାୟେ ।

ତାରାଗଣ କାରାଗାରର ଭୟ ଦେଖାଏ ସତେ,
ଚନ୍ଦ୍ରିକା ବିଗ୍ରହ ଆଚରେ ହୁଏ ଏମନ୍ତେ ପ୍ରତେ ।
ପ୍ରସନ୍ନ ସଂକୁଳ ମୋପକ୍ଷେ ନାଗପରି ଅଟଇ,
ଦିଶେ ଦିଶେ ବିଷ ମୋପାଇଁ ବହୁତର ସୃଜଇ ।

ବସନ ଦଂଶନେ ଉଦ୍ୟତ ଫଣୀ ପରାୟେ ଏବେ,
ଓଢ଼ଣା କଞ୍ଚୁର ଦିଅଇ ମମ ସଉଖ୍ୟ ଯେବେ ।
ମଥାମଣି ସତେ ଭୁଜଙ୍ଗ ବିଷେ ମୋତେ ଦହଇ,
ପୁଷ୍ପମାଳା କଳା ଭୁଜଙ୍ଗ ପରି ସତେ ଦଶଇ ।

ଅଳଂକାର ଥାଇ ଅଂଗରେ ରହନ୍ତୁ ମୋ କଳଙ୍କ,
ଅଳୀକ ଚନ୍ଦନ ବିନ୍ଦୁ ତ ନିନ୍ଦୁ ଥାଏ ନିଃଶଙ୍କ ।
ନାସାର ମୁକୁତା ଝୁକୁତ ହସ ନିଅଇ ଚର,
ଅବତଂସ କର୍ଣ୍ଣେ କହଇ ନାନାଭର୍ତ୍ସନା ଗିର ।

ତାଟଙ୍କ ଯୁଗଳ ଅଟଙ୍କ କରେ ନିରତେ ମତେ,
ସିନ୍ଦୂରଟୀକା ମୋ ଚରିତେ ଟୀକା ରଚଇ ମତେ ।
ଗଣ୍ଡର ମଣ୍ଡନ ଖଣ୍ଡନ କରେ ସଦା ଭ୍ରମର,
ପ୍ରିୟରେ କହିବ ବାସର ମୋର ଏବେ ଅସର ।

ଗଳାର ରତନ ମାଳିକା ଗରଉବ ଗାରଇ,
ନେତ୍ରକ ଦୁକୂଳ କଞ୍ଚୁଳ ପରମତେ ଲାଗଇ ।
ଭୁଜେ ବାଜୁବନ୍ଧ ନିବନ୍ଧ କରି ରଖୁଛି ମତେ,
କନକ କଙ୍କଣ ନିଃସ୍ୱନ ଦୁଃଖଦିଏ ମହତେ ।

ବଳୟ ପାଶକ ମୋ ପକ୍ଷେ କଷ୍ଟ କରିବ କଷ୍ଟ,
କନିଷ୍ଠ ଅଙ୍ଗୁଳି ମୁଦ୍ରିକା କଂକଣ ଲାଗେ ବିଷ ।
କାଞ୍ଚୀବନ୍ଧ ଦିବ୍ୟ ବନ୍ଧନ ମମ ସୁଖ ନାଶକ,
ପ୍ରମୋଦ ଆସନେ ବସାଇ ଦିଅ ନାହିଁ ହେ ଦକ ।

ପଦ୍ମାସନ ପାଦ ତଳକୁ କଣ୍ଟକର ପରିଏ,
ଅସୁଖୀତ କରେ ନିରତେ ବ୍ୟଥା-ବେଣୁ ବଜାଏ ।
ଦୃଷ୍ଟି ମନ କରି ବିବାଦ ଲାଗିଗଲେ ପ୍ରେମିକେ,
ଦିବା ରଜନୀରେ ମୁହୂର୍ତ୍ତେ ନିଦ୍ରା ନାହିଁ ତ ଟିକେ ।

ନିଜସ୍ୱ ବ୍ୟାପାରେ ନ ବଳେ ମନ ମମ କାଂଶତେ,
ଗୁରୁ ଗୁରୁଜନ ସମକ୍ଷେ ଥରେ ଗାତ୍ର ସ୍ଖଳତେ ।
ବିବାଦୀଙ୍କ ମୋର କଲାଏ ଉନ୍ମାଦନା ଧାରଣା,
ମୂର୍ଚ୍ଛିତାବସ୍ଥାରେ ସୁଖକ ଦୁଃଖ ନଯାଏ ଜଣା ।

ପରାଣ ବାନ୍ଧବ ବନ୍ଧୁନେ ଲୋଡ଼ାନାହିଁ । ଅରଣ,
ଏ ସଂସାର ଲାଗେ ଦୁଃସହ କହୁଅଛି ମୋ ପ୍ରାଣ ।
ନବୀନ ବୟସେ ସର୍ବସ୍ୱ ଦିନା ପରାଣସିନ୍ଧୁ,
ନବୀନା ସଉଧ ଗୃହିଣୀ ଆଜି କି ଫଳେ ଇନ୍ଦୁ ।

ପାଇଫଳେ ଦିନା ଯୁବତୀ ଯୁବ ଅଙ୍ଗ ଦହଇ,
ଯାତନା ବିଷାଦେ ଅଛି ହେ ନିରନ୍ତର ମୁଁ ଧ୍ୟାଇ ।
ଜୀବନ ସ୍ଫୁରଣେ ଐଶ୍ୱର୍ଯ୍ୟ ଭୋଗ ସମ୍ପୁ ଦିନା,
ବ୍ୟର୍ଥ ଯଉବନ ମହିମା ଯାଚେ ପ୍ରେମିକ ବିନା ।

କେଶ ବେଶ କଳା ସାଧନେ ମନ ନବଳେ ଆଜ,
ବସନ ଭୂଷଣ ନେପଥ୍ୟେ ଥିଏ ଆସ୍ୱାଦ କାହିଁ ?
ଗଣ୍ଡେ ଦରପଣ ଉରଜେ ଚିତ୍ରକଳା ବିସ୍ତାର,
କେଉଁ ପ୍ରୟୋଜନ କହହେ ଭୃଙ୍ଗ ପ୍ରାଣ-ଆଧାର ।

କର୍ପୂର ଚନ୍ଦନ ଚର୍ଚ୍ଚନେ ଅଛି ସୁଖ କେସନ,
ସୁବାସ ତାମ୍ବୁଲ ଚର୍ବଣେ କେବେ ନବଳେ ମନ ।
ସଖୀଜନ ସେବା ବେଭାର ଖର ହେଲଣି ଆସି,
ବସିଛନ୍ତି ଚିନ୍ତା ମନେ କେବେ ସକଳ ଦାସୀ ।

କଣ୍ଠର ପାଳନ୍ତ ମୟୂର କରୁନାହିଁ ନର୍ତ୍ତନ,
ନଖାଏତ ମୃଗ ତୃଣରେ ସେ ହେ କରି ଲଂଘନ ।
ଶୁକ ମୁକୁତାକୁ ଲଭିଲ ସୁଧାବର୍ଣ୍ଣ ଘଟ,
କରୁନାହିଁ ପଦେ ଅଧେଟି ମୃଦୁଳ ସମ୍ଭାଷଣ ।

ତବ ବଶି କଣି ନେଉଛି ସଦାସ୍ୱକାୟ ଦୁଃଖ,
କଳୁଭ ଶିଶୁଟି ଭ୍ରମର ବିନା ନୁଆଁଏ ମୁଖ ।
ଭ୍ରମର ଚକୋର ବନ୍ଧତା ଭଜିଲଣି ଅଧୁନା,
ଶଶକ ଶିଶୁର ହରଷ ହେଲଣି ଚୂନୁଚୂନା ।

ନିଭୃତ କନ୍ଦରେ ଘୂର୍ଣ୍ଣିତ ହୋଇ ଏବେ ସମୟ,
ମମନ୍ତୁଦ ଦନ୍ତେ ଯନ୍ତ୍ରାରେ ନିରନ୍ତଶଯ୍ୟ ଭୟ ।
କହିବ ପ୍ରେମିକ ଶ୍ରୁତିରେ ନିଖିଳ ଏ ସନ୍ଦେଶ,
ପ୍ରଳୟରେ କିଛି ନରହେ ଆଛେ ମଧୂକରେଶ ।

ତାହାଙ୍କ ଚରଣ ପଙ୍କଜ ତଳେ ମୋର ପ୍ରଣାମ,
ଜଣାଇ କହିବ ସନ୍ଦେଶ ହେଉ ପଛିଙ୍କ ଧାମ ।
ପ୍ରବାହ ଗମିଲା ଉପରୁ ସେତୁବନ୍ଧେ କି ଲଭ,
ସର୍ବସ୍ୱ ହରଣ ହୋଇଲେ ଦ୍ୱାରରୋଧେ କି ଲଭ ।

ପ୍ରତିଦିନ ତୋଳି କୁସୁମ ରଚେ ସୁନ୍ଦର ମାଳା,
ଶୋଭିଇବ ବୋଲି ଆଶାରେ ପ୍ରିୟର ଗଳାବାଳା ।
କେତେ ବାଇ ହରିଚନ୍ଦନ ତହିଁ କର୍ପୂର ମିଶା,
ସଜାଡ଼ି ରଖୁଛି ଅଳିହେ ମନେ କରନି ବାପ୍ସା ।

କଣଳମୟ ପୁଷ୍ପାବଳୀରେ ଗୁନ୍ଥ ମଣ୍ଡିଇ ମୁହିଁ,
ନପାଇ ପରାଣ ବାନ୍ଧବ ରହେ ନିରେଶେ ଶୁଇ ।
ଖଣ୍ଡିଖିର ରୁଚି ଦେବାକୁ ହେମ ପାତ୍ରେ ସାଇତି,
ପର୍ଯ୍ୟୁଷିତ ହେବା ଦେଖିଣ ଫିଙ୍ଗେ ବାହାରେ ନିତି ।

ଯତନେ ଅତର ପମର ସଜାଡ଼ି ମୁଁ ରଖୁଛି,
ବିରହ ବେଦନା ଆଘାତେ ଅପଘନ ଜଳୁଚି ।
କେତେବାର କେତେ ନେପଥ୍ୟ ଅଛି ମାନସ-ବାସେ
ସଜାଡ଼ି ତେଜଛି ଭ୍ରମଙ୍କ ବନ୍ଧୁ ସୁଫଳ ଆଶେ ।

ସୁବାସ କର୍ପୂର ଆଳତି ସ୍ୱର୍ଣ୍ଣଥାଳୀରେ ସାଜି,
ଜଗି ଜଗି ବନ୍ଧୁ ସମୟ ତହୁଁ ଯାଏ ମୁଁ ଭାଜି ।
କୃଷ୍ଣ ଶୁକ୍ଳ ଅର ଶରଣ ବେଶ ଥୋଇଛି ଗତେ,
ଆଦେଶ ହୋଇଲେ ପାଳିବ ବୋଲି ମୁହିଁ ନିରତେ ।

କେତେ ମନୋରଥ ହୃଦୟେ ଜାଗେ ମନ ଗହନେ,
ସାଗରେ ତରଙ୍ଗ ସଦୃଶ ମିଳିଯାଏ ବହନେ ।
କାଳ ଦେବଗଣେ ମନାସ କଲି ମୁଁ ଅଜାଣିତ,
ଚାମୁଣ୍ଡାଙ୍କୁ ବଳି ଯାଚିଲି ଆହେ ପରାଣ ମିତ ।

କରିଥିଲି ଶତଦଳରେ ପୂଜାବିଧି ଭାସ୍କରେ,
ବଂଶ କୁସୁମେ ଅର୍ଚ୍ଚିଲି ଗଣନାଥ ଆଦରେ ।
କେତେ ଚମ୍ପା ଶିବେ ଅର୍ପଣେ ମନାସିଛି ଭ୍ରମର,
ତୁଳସୀ ମଞ୍ଜରୀ ଦେବି ମୁଁ ବିଷ୍ଣୁ ହୁରୁ ପୟର ।

ଜନ୍ମକ୍ଷେତ୍ରେ ଗ୍ରହ ଗଣନା କରାଇଲି ମୁଁ ଶେଷେ,
ଶକୁନ ଶକୁନ ବଚନ ଭାବିଅଛି ବିଶେଷେ ।
ତୁମ୍ଭେ ତ କରୁଣା ସାଗର ହୁଅ ମୋରେ ପ୍ରସନ୍ନ,
ବିଳମ୍ବ ହେଲେ ଅଶୁଭ ଘଟିବଟି ବହନ ।

କେତେ ମୋତେ ଆଶୀର୍ବଚନ ଦ୍ୱିଜବର ତ ତମେ,
ଚନ୍ଦନ ହୋଇ କୃତଜ୍ଞ ପୂଜୁଥିବ ମରମେ ।
ଆକୃଷ୍ଟ ଗୁଣରେ କଦାପି ନୁହେ ବ୍ୟଭିଚରିତ,
ସାକ୍ଷାତ ଶ୍ରୀକୃଷ୍ଣ ବଚନ ଅଟ ଶୁଦ୍ଧ ଚରିତ ।

ବିଶୁଦ୍ଧା କୁସୁମ ଆସିବ ଯାନେ ହେ ବଳୀୟାନ,
ଅଶରଣ ଜନେ କିଂଚିତେ ଦୟା କରିବେ ଦାନ ।
ତୁମ୍ଭପରି ଗୁଣୀ କାହିଁଛି ହୋଇ ଭବେ ନିଷ୍ଠୁର,
ହୃଦୟୁ ଅଶାନ୍ତ ମୋହର ଭାବରେ କରହେ ଦୂର ।

କରଯୋଡ଼ି ମାଗି ଦେଉଛି ଆଗେ କରି ପ୍ରଣତି,
ଯେନ ତେନ ଥରେ ମୋହର ଭକ୍ତି ପ୍ରୀତି ମିନତି ।
ବିକର ନକର ବିଳମ୍ବ ଆହେ ମଧୁପ ବର,
ଅମୃତ ପାନରୁ ଦେବତା ଅଛି ନିଷ୍ଠେ ତୁମର ।

ଉଡି ଉଡ଼ି ଯାଅ ଚପଳେ ନହେଲେ କାର୍ଯ୍ୟ ମନ୍ଥର,
ପାରିବ କେସନେ ଖାରନ୍ତି କୋଟି କୋଟି ନୂବର ।
ଏତେ କହୁ କହୁ ଚଞ୍ଚଳେ ଚଞ୍ଚରୀକ ପ୍ରବର,
ଉଡ଼ିଗଲା ଧରି ଗୁଞ୍ଜାରି ଝିଂକାରି ମନୋହର ।

କାମ ବାସନାରେ ଅନ୍ଧପେ କାହୁଁ ପ୍ରକୃତ ଭାବ,
ବିବେଚନା କରିପାରିବ ହେଣୁ ମୁଗ୍ଧ ସ୍ୱଭାବ ।
ବୁଝିଲ ଯାଇଛି ଭ୍ରମର ଯେନ ବାଞ୍ଛା-ମାନସ,
କହିବ ଯରଣା ବାନ୍ଧବେ, ହେଲା ଚିତ୍ତେ ହରଷ ।

କାହିଁ ପ୍ରିୟତମ ସନ୍ଦେଶ ବାହକତା ଗ୍ୟାନର,
କାହିଁବା ବିବେକ ବନ୍ଧନ ସ୍ଥିର କୀଟ ଭ୍ରମର ।